ଆଦି ଶଙ୍କରାଚାର୍ଯ୍ୟକୃତ

# ଭଜ ଗୋବିନ୍ଦମ୍

ବ୍ୟାଖ୍ୟାକାର

## ସ୍ୱାମୀ ଚିନ୍ମୟାନନ୍ଦ




ସେଣ୍ଟ୍ରାଲ ଚିନ୍ମୟ ମିଶନ ଟ୍ରଷ୍ଟ

ପୁନଃ ମୁଦ୍ରଣ ୨୦୧୬

ମୁଦ୍ରଣ ସଂଖ୍ୟା : ୩୦୦୦

ଅନୁବାଦ : ଶ୍ରୀ ଗୟାଧର ଦତ୍ତ

ସଂପାଦନା : ଗୋବିନ୍ଦ ଚନ୍ଦ୍ର ମିଶ୍ର
ବାଲାଜୀ ପଣ୍ଡା
ବିଶ୍ୱନାଥ ପାଢୀ
ଡ. କେ. ବେଣୁଗୋପାଳ ପାତ୍ର

**ପ୍ରକାଶନ:**
ସେଣ୍ଟ୍ରାଲ ଚିନ୍ମୟ ମିଶନ ଟ୍ରଷ୍ଟ, ଓଡ଼ିଆ ପ୍ରକାଶନ ବିଭାଗ
ପ୍ଲଟ ନଂ - ୧୮୦, ଭି.ଆଇ.ପି. ଏରିଆ, ପୋଷ୍ଟ - ଆଇ.ଆର.ସି. ଭିଲେଜ
ଭୁବନେଶ୍ୱର - ୭୫୧୦୧୫, ଫୋନ୍ : (୦୬୭୪) ୨୫୫୪୦୦୪
email id- cmbooksbbsr@gmail.com, cmbhubaneswar@gmail.com

**ମୁଦ୍ରଣ:**
ପ୍ରିଣ୍ଟଟେକ୍ ଅଫ୍‌ସେଟ୍ ପ୍ରା:ଲି:,
ଏଫ୍ - ୬୬/୧, ଚନ୍ଦକା ଶିଳ୍ପାଞ୍ଚଳ, ଭୁବନେଶ୍ୱର-୭୫୧୦୨୪
ଫୋନ୍ : (୦୬୭୪) ୨୭୪୦୭୩୭

**ମୂଲ୍ୟ : ₹ 40/- (ଚାଳିଶ ଟଙ୍କା ମାତ୍ର)**

# ଭଜ ଗୋବିନ୍ଦମ୍

## ମୁଖଶାଳା

ଭଗବତ୍‌ପାଦ ଆଚାର୍ଯ୍ୟ ଶଙ୍କର କେବଳ ଜଣେ ଉଚ୍ଚକୋଟୀର ସନ୍ଥ ଓ ଶ୍ରେଷ୍ଠ ଅଦ୍ୱୈତ ଦାର୍ଶନିକ ନ ଥିଲେ, ସେ ଆମ ଦେଶର ଜଣେ ପ୍ରଭାବଶାଳୀ ହିନ୍ଦୁ ଧର୍ମ ପ୍ରଚାରକ ମଧ୍ୟ ଥିଲେ । ଯେତେବେଳେ ହିନ୍ଦୁ ଧର୍ମର ପତନ ଆରମ୍ଭ ହୋଇ ହିନ୍ଦୁ ସମାଜ ନାନା ମତାନ୍ଧମାନଙ୍କ ଦ୍ୱାରା ଖଣ୍ଡ ବିଖଣ୍ଡିତ ହେଉଥିଲା, ପ୍ରତ୍ୟେକେ ନିଜ ନିଜର ମତକୁ ଶ୍ରେଷ୍ଠତ୍ୱ ପ୍ରଦାନ କରି ପରସ୍ପର ଭିତରେ ବିବାଦ ସୃଷ୍ଟି କରୁଥିଲେ ଓ ସେହି ବିବାଦ ପର୍ଯ୍ୟାୟକ୍ରମେ ସେମାନଙ୍କ ଶିଷ୍ୟଗୋଷ୍ଠୀମାନଙ୍କ ମଧ୍ୟରେ ଲାଗି ରହିଥିଲା ଏବଂ ସେହି ସୁଯୋଗ ନେଇ ବୌଦ୍ଧଧର୍ମ ନିଜର ମନୋମୁଗ୍ଧକାରୀ ଦର୍ଶନ ଦ୍ୱାରା ହିନ୍ଦୁ ଧର୍ମାବଲମ୍ବୀମାନଙ୍କୁ ପ୍ରବଳ ବେଗରେ ଆକୃଷ୍ଟ କରୁଥିଲା, ସେତେବେଳେ ଆଚାର୍ଯ୍ୟ ଶଙ୍କରଙ୍କ ଭଳି ଜଣେ ବିଚକ୍ଷଣ ଯୁଗଜନ୍ମା ଧର୍ମସଂସ୍ଥାପକଙ୍କର ଅତ୍ୟନ୍ତ ଆବଶ୍ୟକ ଥିଲା ।

ସମାଜ ଯେତେବେଳେ ଧ୍ୱଂସମୁଖୀ, କୌଣସି ଭାବଧାରାର ପ୍ରାଧାନ୍ୟ ନାହିଁ, ଅହିଂସା, ଆତ୍ମସଂଯମ ଓ ବିଶ୍ୱପ୍ରେମ ଇତ୍ୟାଦି ଭାବଧାରାରେ ବୌଦ୍ଧ ଧର୍ମ ସେ ସମୟର ରାଜା ଓ ପ୍ରଜାଙ୍କୁ ସମଭାବରେ ଆକୃଷ୍ଟ କରି ସାରିଛି; ହିନ୍ଦୁ ଧର୍ମର ଏଭଳି ଚରମ ଅଧୋଗତି ସମୟରେ ଆଚାର୍ଯ୍ୟ ଶଙ୍କରଙ୍କର ଆବିର୍ଭାବ ହେଲା ।

ଏକ ପକ୍ଷରେ ସମାଜର ବିଚାରଧାରାରେ ଅଧୋଗତି, ଅନ୍ୟ ପକ୍ଷରେ ଦେଶରେ ଗମନାଗମନର କୌଣସି ସୁବିଧା ନାହିଁ ଏବଂ ଆଚାର୍ଯ୍ୟ ଶଙ୍କର ମଧ୍ୟ ଏକାକୀ । ଏଭଳି ପରିସ୍ଥିତିରେ ଶଙ୍କରଙ୍କର କର୍ମ ଯେ କେତେ ଦୁଃସାଧ୍ୟ ଥିଲା ତାହା ସହଜରେ ଅନୁମେୟ । କିନ୍ତୁ ଆଚାର୍ଯ୍ୟ ଶଙ୍କର ନିଜର ଓଜସ୍ୱିନୀ ଅଦ୍ୱୈତ ଭାବଧାରାର ପ୍ରଚାରାର୍ଥେ ଏକାକୀ ସମଗ୍ର ଦେଶ ପଦବ୍ରଜରେ ଭ୍ରମଣ କଲେ । ସେ ଅକାଟ୍ୟ ଯୁକ୍ତି ଦ୍ୱାରା ବୌଦ୍ଧ ପଣ୍ଡିତମାନଙ୍କର ମତବାଦକୁ ଖଣ୍ଡନ କରି ସମଗ୍ର ଭାରତବର୍ଷରୁ ବୌଦ୍ଧଧର୍ମକୁ ସମୂଳେ ବିତାଡିତ କରିଦେଲେ । ଦେଶରେ ପୁଣି ସେହି ପୁରାତନ ସନାତନ ଧର୍ମ ପ୍ରତିଷ୍ଠିତ ହେଲା ।

ଉପନିଷଦ୍‌ମାନଙ୍କରେ ପ୍ରଚାରିତ 'ସତ୍ୟ' ହିନ୍ଦୁ ଧର୍ମ ଓ ହିନ୍ଦୁ ସଭ୍ୟତାର ମୂଳଭିତ୍ତି। ସେହି ଆଦର୍ଶ ଓ ସତ୍ୟ ହିଁ ଧର୍ମପ୍ରଚାର କାର୍ଯ୍ୟରେ ଆଚାର୍ଯ୍ୟ ଶଙ୍କରଙ୍କର ଅମୋଘ ଅସ୍ତ୍ର ହୋଇଥିଲା। ବାସ୍ତବରେ ଏହି ଋଷିସଭ୍ୟତାର ପ୍ରଚାର ନିମିତ୍ତ ଆଚାର୍ଯ୍ୟ ଶଙ୍କର ଏକମାତ୍ର ଯୋଗ୍ୟବ୍ୟକ୍ତି ଥିଲେ।

ଉପନିଷଦର ସତ୍ୟକୁ ପ୍ରଚାର କରିବା ନିମିତ୍ତ ଯେଉଁ ଶୁଦ୍ଧ ଚିନ୍ତାଧାରା, ସତ୍ୟାନୁସନ୍ଧାନର ଜ୍ୱଳନ୍ତ ଉଦ୍ଦୀପନା, ପ୍ରଗାଢ଼ ଆତ୍ମବିଶ୍ୱାସ, ଦେଶମାତୃକାର ସେବା ନିମିତ୍ତ ପ୍ରବଳ ବାସନା ଓ ଅବିରାମ ଯୁକ୍ତି ଆଦି ଗୁଣଗୁଡିକ ଅତ୍ୟନ୍ତ ଆବଶ୍ୟକ, ସେ ସବୁଗୁଡିକ ଶଙ୍କରଙ୍କ ଠାରେ ପରିପୂର୍ଣ୍ଣ ହୋଇ ରହିଥିଲା ।

ବାସ୍ତବିକ ମାତ୍ର କୋଡିଏଟି ବର୍ଷ ଭିତରେ ଏତାଦୃଶ ବିରାଟ ଯୋଜନାକୁ ସମ୍ପନ୍ନ କରିପାରିଥିଲେ ଶଙ୍କର। ୩୨ବର୍ଷ ବୟସରେ କର୍ମ ଶେଷ କରି ସେ ମାନବ ଜୀବନ ସାଙ୍ଗ କରିଥିଲେ।

ସଂସ୍କୃତ ଭାଷା ମାଧ୍ୟମରେ ସୁଲଳିତ ପଦ୍ୟ ଓ ଗଦ୍ୟରେ ନିଜର ଉଚ୍ଚ ଦାର୍ଶନିକ ଚିନ୍ତାଧାରାକୁ ଶଙ୍କର ଯଥାଯଥ ରୂପରେଖ ଦେଇପାରିଥିଲେ। ସଂସ୍କୃତ ଭାଷାରେ ଏପରି କୌଣସି ଶୈଳୀ ନାହିଁ ଯାହାକୁ ସେ ପ୍ରୟୋଗ କରିନାହାନ୍ତି। ତାଙ୍କର ଗଦ୍ୟଲେଖା ଯେପରି ଯୁକ୍ତିଯୁକ୍ତ, ପଦ୍ୟଲେଖା ସେହିପରି ସୁଲଳିତ ଓ ଗଭୀର ଭାବ ଉଦ୍ଦୀପକ। ସେ ଯେଉଁପରି ଭାବରେ ଯାହା ଲେଖି ଯାଇଛନ୍ତି, ତାହା ଅଦ୍ୟାବଧି ଅତୁଳନୀୟ। ଉଦାର-ଭାବବ୍ୟଞ୍ଜକ ପଦ୍ୟ ସାହିତ୍ୟରୁ ଆରମ୍ଭ କରି ସୁଲଳିତ ମଧୁମୟ କବିତାବଳୀ, ଶୃଙ୍ଖଳିତ ଗଦ୍ୟ ସାହିତ୍ୟ ଠାରୁ ଆରମ୍ଭ କରି ଲାସ୍ୟମୟୀ ସଂଗୀତ-ସମ୍ଭାର, ଉପନିଷଦ୍‌ର ଗୂଢ଼ ରହସ୍ୟ ବ୍ୟାଖ୍ୟାଠାରୁ ଆରମ୍ଭ କରି ବ୍ରହ୍ମସୂତ୍ରରେ ସୂକ୍ଷ୍ମତତ୍ତ୍ୱର ବିସ୍ତୃତିକରଣ କିମ୍ବା ଭଗବତ୍ ଗୀତାର ସମ୍ୟକ୍ ଆଲୋଚନା ଠାରୁ ଆରମ୍ଭ କରି ଭକ୍ତିରସାତ୍ମକ କବିତାବଳୀ ପର୍ଯ୍ୟନ୍ତ ସମସ୍ତ କ୍ଷେତ୍ରରେ ଶଙ୍କରଙ୍କ ଉନ୍ନତ ଚିନ୍ତାଧାରା ସୁନ୍ଦର ଭାବେ ବିକଶିତ ହୋଇଛି ।

ଆମ ଦେଶରେ ଆମର ବୈଦିକ ସଭ୍ୟତା କେବଳ ଲେଖନୀ ମୁନରେ ତିଷ୍ଠି ନାହିଁ। ଶଙ୍କରଙ୍କର ପାଣ୍ଡିତ୍ୟ ଯେପରି ଥିଲା, ସେହିପରି ସେ ଥିଲେ ଜଣେ ବିରାଟ ସଂଗଠକ, ଦୂରଦର୍ଶୀ ଯୁଗ ପ୍ରବର୍ତ୍ତକ ଓ ପରମ ଦେଶସେବୀ। ଆକୁମାରୀ ହିମାଚଳ ସମଗ୍ର ଭାରତବର୍ଷକୁ ପଦବ୍ରଜରେ ପରିଭ୍ରମଣ କରି ଶ୍ରୁତିମାତାର ବାଣୀ ଦେଶବାସୀଙ୍କୁ ଶୁଣାଇ ଆଦର୍ଶ ଜୀବନ ଯାପନ କରିବା ନିମିତ୍ତ ସେ ବଜ୍ରଗମ୍ଭୀର ସ୍ୱରରେ ଆହ୍ୱାନ ଦେଇଥିଲେ । ଏହି ପ୍ରକାର ବିରାଟ ଯୋଜନା ଏକ ସୁସଂଗଠିତ ଅନୁଷ୍ଠାନ ବ୍ୟତିରେକେ କୌଣସି ଏକ ବ୍ୟକ୍ତି ଦ୍ୱାରା ସମ୍ଭବ ହୋଇପାରେନା। ତେଣୁ ଶଙ୍କର ମଠମାନ ସ୍ଥାପନକରି,

ମନ୍ଦିର ତୋଳାଇ, ଶିଷ୍ଟାଚାରର ନୀତି ନିୟମମାନ ପ୍ରଣୟନ କରି ମହିମାମୟ ସନାତନ ହିନ୍ଦୁଧର୍ମର ଦୃଢ଼ ସ୍ଥିତି ନିମିତ୍ତ ସମସ୍ତ ପ୍ରକାର ବନ୍ଦୋବସ୍ତ କରିଯାଇଛନ୍ତି ।

'ଭଜଗୋବିନ୍ଦମ୍' ବା 'ମୋହ-ମୁଦ୍‌ଗର' ଆଚାର୍ଯ୍ୟ ଶଙ୍କରଙ୍କର ଲେଖାଗୁଡ଼ିକ ମଧ୍ୟରେ ଶ୍ରେଷ୍ଠ ଅବଦାନ । ଆକାର ପ୍ରକାରରେ କ୍ଷୁଦ୍ର ହେଲେ ମଧ୍ୟ ବେଦାନ୍ତର ମୌଳିକ ତଥ୍ୟ ସବୁ ଏଥିରେ ଏତେ ସରଳ ସୁନ୍ଦର ସଂଗୀତ ମାଧ୍ୟମରେ ଶିକ୍ଷା ଦିଆଯାଇଛି ଯେ ଏହା ପାଠକରି ବାଲ୍ୟକାଳରୁ ଋଷି ସନ୍ତାନଗଣ ଅଦ୍ୱୈତବାଦରେ ନିଜକୁ ଗଢ଼ି ନେବା ପାଇଁ ସୁଯୋଗ ପାଇଛନ୍ତି । ସଂଗୀତ ମାଧ୍ୟମରେ ଏହି ଶ୍ଳୋକଗୁଡ଼ିକ ମନେ ରଖାଯାଇ ପାରିବ । ସର୍ବୋପରି ବିଚାରବନ୍ତ ବୟସ୍କ ଲୋକେ ଏହା ପାଠକଲେ ସେମାନଙ୍କର ମୋହ ବା ଭ୍ରମ ଦୂର ହୋଇଯିବ । ତେଣୁ ଏହି କାବ୍ୟକୁ 'ମୋହ-ମୁଦ୍‌ଗର' କୁହାଯାଏ ।

ଆଦି ଶଙ୍କରଙ୍କର ଏହି ବିଖ୍ୟାତ 'ମୋହମୁଦ୍‌ଗର' କାବ୍ୟ ଲେଖାର ଅନ୍ତରାଳରେ ଏକ ଚମତ୍କାର କାହାଣୀ ରହିଛି । ଏକଦା ଶଙ୍କର ନିଜର ଶିଷ୍ୟମାନଙ୍କ ସହ ବାରଣାସୀ ସହର ମଧ୍ୟ ଦେଇ ଯାଉଥାଆନ୍ତି । ପଥରେ ଜଣେ ବୃଦ୍ଧ ପଣ୍ଡିତ ବ୍ୟାକରଣର ନିୟମମାନ କଣ୍ଠସ୍ଥ କରୁଥିବାର ସେ ଶୁଣି ପାରିଲେ । ବ୍ୟାକରଣର ନୀତିନିୟମ ପାଳନ କଲେ ଭାଷାରେ ପାରଦର୍ଶିତା ଆସିବ । କିନ୍ତୁ ଏପରି ପାରଦର୍ଶିତା ମରଣ ସମୟରେ କୌଣସି କାମରେ ଲାଗିବ ନାହିଁ, ଏକଥା ବୃଦ୍ଧ ତିଳେମାତ୍ର ଭାବୁ ନ ଥିଲେ । ତାଙ୍କୁ ତାଙ୍କର ଏହି ଅବିବେକିତା ପାଇଁ ଉପହାସ କରି ଶଙ୍କର ଲେଖିଥିଲେ 'ମୋହ-ମୁଦ୍‌ଗର' ଯାହା ପରେ 'ଭଜଗୋବିନ୍ଦମ୍' ନାମରେ ଆଦୃତ ହେଲା ।

ଭଜଗୋବିନ୍ଦମ୍‌ର ପ୍ରଥମ ଶ୍ଳୋକଟି ସବୁ ଶ୍ଳୋକର ଶେଷରେ ଘୋଷା ଆକାରରେ ଗାନ କରାଯାଏ । ସେହି ଶ୍ଳୋକ ପରେ ଯେଉଁ ବାରଟି ଶ୍ଳୋକ ଶଙ୍କର ରଚନା କରିଛନ୍ତି, ତାହାକୁ ଦ୍ୱାଦଶ ମଞ୍ଜରିକା ସ୍ତୋତ୍ର କୁହାଯାଏ । ପରେ ଗୁରୁଙ୍କର ଉଦ୍ଦୀପନାମୟ ଭାବଧାରାରେ ଉଦ୍ଦୀପ୍ତ ହୋଇ ଶଙ୍କରଙ୍କର ୧୪ଜଣ ଶିଷ୍ୟ ୧୪ଟି ଶ୍ଳୋକ ରଚନା କରି ଗୁରୁଙ୍କ ଶ୍ଳୋକସହ ଯୋଗ କଲେ । ସେ ଶ୍ଳୋକ ସମୂହକୁ ଚତୁର୍ଦ୍ଦଶ ମଞ୍ଜରିକା ସ୍ତୋତ୍ର କୁହାଯାଏ । ସେ ୧୪ଟି ଶ୍ଳୋକ ଶୁଣିସାରି ୪ଟି ଶ୍ଳୋକ ଦ୍ୱାରା ଶଙ୍କର ଶିଷ୍ୟମାନଙ୍କୁ ଆର୍ଶୀବାଦ କଲେ । ଏହିପରି ୩୧ଟି ଶ୍ଳୋକପୂର୍ଣ୍ଣ କାବ୍ୟଟି 'ମୋହମୁଦ୍‌ଗର' ନାମରେ ଆମ ଦେଶରେ ଆଦୃତ । ଏହି 'ମୋହମୁଦ୍‌ଗର' କାବ୍ୟ ଯେତେବେଳେ ଜନପ୍ରିୟ ହୋଇ ଉଠିଲା, ସେତେବେଳେ ଏହି କାବ୍ୟ ବାରମ୍ବାର ବହୁ ଅନୁଷ୍ଠାନ ଦ୍ୱାରା ମୁଦ୍ରିତ ହେଲା । ଫଳରେ ଏହି ଶ୍ଳୋକଗୁଡ଼ିକରେ ନାନା ପରିବର୍ତ୍ତନ ଦେଖାଦେଲା । କେତେକ କ୍ଷେତ୍ରରେ ଏହି ଶ୍ଳୋକ ସଂଖ୍ୟା କମ୍ ହେଲା, କେଉଁଠାରେ ଆଗ ଶ୍ଳୋକକୁ ପଛରେ ଓ ପଛ

ଶ୍ଳୋକକୁ ଆଗରେ ରଖାଗଲା ଏବଂ କେଉଁଠାରେ ବିଭିନ୍ନ ଶ୍ଳୋକକୁ ଭାଙ୍ଗି ଏକ ନୂତନ ରୂପ ଦିଆଗଲା, ଫଳରେ ଶ୍ଳୋକଗୁଡିକର ସମସ୍ତ ଭାବଧାରା ଖଣ୍ଡବିଖଣ୍ଡିତ ହୋଇଗଲା।

ଭଜଗୋବିନ୍ଦମ୍ କାବ୍ୟର ପ୍ରଥମ ବାରଟି ଶ୍ଳୋକକୁ 'ଦ୍ୱାଦଶ ମଞ୍ଜରିକା' କୁହାଯାଏ। ଦ୍ୱାଦଶ ମଞ୍ଜରିକା ଅର୍ଥ ୧୨ଟି କୁସୁମ କଳିର ମାଳା। ପ୍ରସ୍ଫୁଟିତ କଳିର ସୌନ୍ଦର୍ଯ୍ୟ ଯେପରି ଲୋଭନୀୟ, ସୌରଭ ସେହିପରି ଉଲ୍ଲାସଦାୟକ। ପ୍ରସ୍ଫୁଟିତ କୁସୁମର ଅନ୍ତର ପ୍ରଦେଶରୁ ମଧୁମକ୍ଷି ହିଁ କେବଳ ମଧୁ ଆହରଣ କରିବାରେ ସକ୍ଷମ। ସେ ସୌନ୍ଦର୍ଯ୍ୟ ଦେଖେନା, ବରଂ ସାର ସଂଗ୍ରହ କରେ। ସେହିପରି ବହୁଲୋକ ତାଳମାନ ଦେଇ ଏ କବିତାକୁ ଗାନ କରି ଆନନ୍ଦ ଅନୁଭବ କରନ୍ତି। କିନ୍ତୁ ପରିଶ୍ରମୀ ମଧୁମକ୍ଷୀ କୁସୁମର ଗଭୀର ପ୍ରଦେଶରୁ ମଧୁ ଆହରଣ କଲାପରି ସୁଧୀ ସାଧକବୃନ୍ଦ ଭଜଗୋବିନ୍ଦମ୍‌ରୁ ଜୀବନର ସାରତତ୍ତ୍ୱ ଗ୍ରହଣ କରିବାରେ ବିଭୋର।

କାବ୍ୟର ପ୍ରଥମ ଶ୍ଳୋକଟି ଭକ୍ତିରସାତ୍ମକ। ଅବଶିଷ୍ଟ ୩୦ଟି ଶ୍ଳୋକରେ ଅତ୍ୟନ୍ତ ଯୁକ୍ତିଯୁକ୍ତ ଭାବେ ମଣିଷ ଜୀବନର ବ୍ୟାଖ୍ୟା କରାଯାଇଛି। ମଣିଷ ନିର୍ବୋଧ ଭାବେ ନିଜର ଅନ୍ତର୍ନିହିତ ଶକ୍ତିକୁ ନ ଚିହ୍ନି ଜଗତରେ ନିଜକୁ ବଡ ଅସହାୟ ମନେ କରି ଦୁଃଖରେ ଭାଙ୍ଗି ପଡୁଛି। ସେହି ୩୦ଟି ଶ୍ଳୋକରେ ଶଙ୍କର ମଣିଷ ଜୀବନର ଏହି ନିର୍ବୋଧତାକୁ ଅତି ସୁନ୍ଦର ଭାବେ ବିଶ୍ଳେଷଣ କରିଛନ୍ତି।

ଶଙ୍କର ବେଦାନ୍ତର ଗୂଢ଼ସତ୍ୟକୁ 'ଆତ୍ମବୋଧ', 'ବିବେକ ଚୂଡାମଣି' ଓ 'ବାକ୍ୟବୃତ୍ତି' ଇତ୍ୟାଦି ବେଦାନ୍ତ ପ୍ରକରଣ ଗ୍ରନ୍ଥମାନଙ୍କରେ ନାନା ଭାବରେ ପ୍ରକାଶ କରିଛନ୍ତି, କିନ୍ତୁ ଭଜଗୋବିନ୍ଦମ୍ ମାଧ୍ୟମରେ ମଣିଷର ଦୁଃଖକୁ ଅତି ଚମତ୍କାର ଭାବରେ ବିଶ୍ଳେଷଣ କରି ତଦ୍ୱାରା କିପରି ଆତ୍ମାନୁଭୂତି ଲାଭ କରାଯାଇପାରିବ, ତାହାର ମାର୍ଗ ସେ ଦେଖାଇ ଦେଇଛନ୍ତି। ଶଙ୍କରଙ୍କର ଏହି ବିଶ୍ଳେଷଣ ମାନବ ଜୀବନର ଲକ୍ଷ୍ୟ ପ୍ରଦର୍ଶନ କରାଇଥାଏ। ଏଥି ସଙ୍ଗେ ସଙ୍ଗେ ଏହା ମନୁଷ୍ୟର ଦୈନନ୍ଦିନ ଜୀବନର କାମନା ବାସନା ଜନିତ ଦୁଃଖ, ନିର୍ଯାତନା ତଥା ତାହାର ବିଷମୟ ପରିଣାମ ସମ୍ବନ୍ଧରେ ସଚେତନ କରାଇଦିଏ।

ନିଜର ପାଣ୍ଡିତ୍ୟ ଦର୍ଶାଇବା ପାଇଁ ଆଚାର୍ଯ୍ୟ ଶଙ୍କର ଏପରି ସରଳ ସୁନ୍ଦର ସ୍ତୋତ୍ର ଲେଖି ନାହାନ୍ତି, କିମ୍ବା ଜଣେ ବୃଦ୍ଧର ଭ୍ରାନ୍ତ ଧାରଣାକୁ ଦୂର କରିବା ନିମିତ୍ତ ନିଜର ମୂଲ୍ୟବାନ ସମୟ ନଷ୍ଟ କରିନାହାନ୍ତି। ସମଗ୍ର ମାନବ ଜାତିର ହିତ ଦୃଷ୍ଟିରୁ ଶଙ୍କର ସ୍ତୋତ୍ରଗୁଡିକୁ ଅତି ସରଳ ଓ ସୁନ୍ଦର ଭାବରେ ରଚନା କରିଛନ୍ତି।

ଜୀବନଯାତ୍ରାରେ ଯେଉଁ ସାଧକମାନେ ନିଜର ଲକ୍ଷ୍ୟ ହାସଲ ପାଇଁ ଅହରହ ସଂଗ୍ରାମ ଚଳାଇଛନ୍ତି ସେମାନଙ୍କୁ ସାହାଯ୍ୟ କରିବା ନିମିତ୍ତ ଭଜଗୋବିନ୍ଦମ୍‌ରେ

ଉପଦେଶମାନ ଦିଆଯାଇଛି ମାତ୍ର। ସାଧକ ମାନଙ୍କୁ ନିଜର ଚିନ୍ତାଧାରାରେ ଏହା ଖାଦ୍ୟ ଯୋଗାଉଛି। ଏହା କେବଳ କେତେଗୁଡିଏ ଉପଦେଶମାଳା। ଏଥିରେ ବାଦବିବାଦର ସ୍ଥାନ ନାହିଁ। ଗୁରୁ ନିଜର ଅନୁଭୂତ ଗୂଢ଼ତତ୍ତ୍ୱମାନ ଉପଦେଶ ଛଳରେ ଶିଷ୍ୟମାନଙ୍କୁ ଦାନ କରିଅଛନ୍ତି।

ସେହି ଶିଷ୍ୟ କିଏ? 'ଶିକ୍ଷତେ ଇତି ଶିଷ୍ୟଃ'- ଅର୍ଥାତ୍ ଯାହାଙ୍କୁ ଗୁରୁ ଶିକ୍ଷା ଦେଉଅଛନ୍ତି। ପୁଣି 'ଶିଷ୍ୟାତ୍ ବିଶିଷ୍ୟତେ ଶାସ୍ତ୍ରାଦି-ପରିଜ୍ଞାନେନ, ବହିର୍ମୁଖଃ ଅପେକ୍ଷ୍ୟ ଇତି ଶିଷ୍ୟଃ' ଅର୍ଥାତ୍ ଯେ ଜୀବନର ଗତିରେ ଅଗ୍ରସର ହୋଇ ଅନ୍ତର୍ମୁଖୀ ହେଲେଣି, ଶାସ୍ତ୍ର ଅଧ୍ୟୟନ କରି ଅତୀତରେ ବହିର୍ମୁଖୀ ଅଭ୍ୟାସକୁ ଦୂର କଲେଣି, ସେ ଶିଷ୍ୟ। 'ଇନ୍ଦ୍ରିୟାଦି ପ୍ରବୃତ୍ତିଂ ଶିକ୍ଷୟତି ଇତି ଶିଷ୍ୟଃ'- ଅର୍ଥାତ୍ ଯେ ନିଜ ଇନ୍ଦ୍ରିୟ ସକଳର କ୍ରିୟାକଳାପକୁ ସଂଯତ କରେ ସେ ଶିଷ୍ୟ। ତେଣୁ ଯେଉଁ ଲୋକ ଗୁରୁଙ୍କ ଠାରୁ ଉପଯୁକ୍ତ ଶିକ୍ଷା ପାଇ ନିଜର ଜ୍ଞାନ ସାହାଯ୍ୟରେ ଇନ୍ଦ୍ରିୟମାନଙ୍କୁ ସଂଯତ କରି ଅନ୍ତର୍ମୁଖୀ ହୁଅନ୍ତି, ସେହି ପ୍ରକାର ଶିଷ୍ୟମାନଙ୍କ ଉଦ୍ଦେଶ୍ୟରେ 'ଭଜଗୋବିନ୍ଦମ୍' ଉଦ୍ଦିଷ୍ଟ।

ଏହି ଶ୍ଳୋକଗୁଡିକ ଅଦ୍ୱୈତ ଦର୍ଶନର ବିରୁଦ୍ଧାଚରଣ କରୁଥିବା ଯୁକ୍ତିସକଳ ବିରୁଦ୍ଧରେ ଲେଖାଯାଇ ନାହିଁ କିମ୍ବା ଏହା କୌଣସି ଦୁର୍ବଳ ମୁହୂର୍ତ୍ତର ଆବେଗ ଉଚ୍ଛ୍ୱାସ ନୁହେଁ, ବରଂ ହୃଦୟବାନ୍ ଲୋକର ହୃଦୟରେ ଦିବ୍ୟ ଆତ୍ମଚେତନା ଜାତ କରାଇବାରେ ଏହା ସାହାଯ୍ୟ କରେ। ଏଥିରେ ଥିବା ୩୦ଟି ଶ୍ଳୋକର ଶୈଳୀ ଅତି ଗୁରୁଗମ୍ଭୀର। ଏଥିରେ ନିହିତ ଉପଦେଶ ଅନୁସରଣର ପରିଣାମ ଅତ୍ୟନ୍ତ ମହନୀୟ। ଭାବଧାରାରେ ଦୁର୍ବଳତାର ପ୍ରଶ୍ନ ନାହିଁ, ଭ୍ରାନ୍ତ ମାନବକୁ ଉପଯୁକ୍ତ ପଥରେ ନେବା ନିମିତ୍ତ ଦୟାମାୟା ନ ଦେଖାଇ ଦୃଢ଼ ହସ୍ତରେ କଷାଘାତ କରିବାକୁ ଏହି ଶ୍ଳୋକଗୁଡିକ ତିଳେହେଲେ କୁଣ୍ଠାବୋଧ କରିନାହାନ୍ତି। ଉଦାହରଣ ସ୍ୱରୂପ ବାସଗୃହରେ ନିଆଁ ଲାଗିଛି । ପିତାମାତା ଗୁରୁଜନ ଗଭୀର ନିଦ୍ରାମଗ୍ନ। ତାଙ୍କୁ ନିଦରୁ ଉଠାଇବ କି ନାହିଁ? ପୁଣି ଅତି କୋମଳ ଓ ସରଳ ଛୋଟଛୋଟ ଶିଶୁଗୁଡିକ ନିଦରେ ଶୋଇଛନ୍ତି। ସେମାନଙ୍କର କୋମଳତାକୁ ଚାହିଁ ନିଆଁରୁ ଉଦ୍ଧାର କରାଯିବ କି ନାହିଁ? ସେତେବେଳେ ଏପରି ବିଚାର କରାଯାଏ ନାହିଁ। ବରଂ ଯାହା ଆଗେ ଆସିଯାଏ ଦୃଢ଼ ହସ୍ତରେ ଓ ରକ୍ଷଭାବରେ ତାହା କରାଯାଏ। କୌଣସି ନିୟମ କାନୁନ୍ ମାନିବାର ବେଳ ନ ଥାଏ। ସେହିପରି ଶିଷ୍ୟମାନଙ୍କର ଜୀବନଗୃହ ଯେତେବେଳେ ମରଣ ନିଆଁରେ ଧୂ ଧୂ ହୋଇ ଜଳୁଛି ଓ ଶିଷ୍ୟମାନେ ମୋହ ନିଦ୍ରାରେ ଶୋଇଛନ୍ତି, ଜ୍ୱଳନ୍ତ ମରଣ ନିଆଁରୁ ସେମାନଙ୍କୁ ଉଦ୍ଧାର କରିବା ନିମିତ୍ତ ମୋହମୁଦ୍‌ଗର ହିଁ ମଧୁର କଷାଘାତ ବା କରୁଣାବ୍ୟଞ୍ଜିତ କର୍କଶ ପ୍ରହାର ।

# ମୋହ ମୁଦ୍‌ଗର

## ଭଜ ଗୋବିନ୍ଦମ୍

**ଭଜ ଗୋବିନ୍ଦଂ ଭଜ ଗୋବିନ୍ଦଂ**
**ଗୋବିନ୍ଦଂ ଭଜ ମୂଢ଼ମତେ ।**
**ସଂପ୍ରାପ୍ତେ ସନ୍ନିହିତେ କାଲେ**
**ନ ହି ନ ହି ରକ୍ଷତି ଡୁକୃଂକରଣେ ॥୧॥**

ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ । ମୂଢ଼ମତେ = ହେ ନିର୍ବୋଧ, ସଂପ୍ରାପ୍ତେ = (ଯେତେବେଳେ) ଆସେ, ସନ୍ନିହିତେ = ନିର୍ଦ୍ଧାରିତ, କାଲେ = ସମୟ (ମରଣ), ନ ହି = କଦାପି ନୁହଁ, ନ ହି = କଦାପି ନୁହଁ, ରକ୍ଷତି = ରକ୍ଷାକରେ, ଡୁକୃଂ = ବ୍ୟାକରଣ, କରଣେ = ଅଭ୍ୟାସ ।

*୧. ହେ ନିର୍ବୋଧ, ତୁମେ ଯେଉଁ ବ୍ୟାକରଣ ଅଭ୍ୟାସ କରୁଛ ଅନ୍ତକାଳରେ ତାହା ତୁମକୁ ମରଣମୁଖରୁ କଦାପି ରକ୍ଷା କରିପାରିବ ନାହିଁ । ତେଣୁ ତୁମେ ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ ।*

'ଭଜ ଗୋବିନ୍ଦମ୍' ଏକ ଗୀତିକାବ୍ୟ । ସମ୍ମିଳିତ କଣ୍ଠରେ ତାଳମାନ ଦେଇ ଗାନ କରାଯାଏ । ଏହି କାବ୍ୟର ପ୍ରଥମ ଶ୍ଳୋକଟି ଅନ୍ୟ ପ୍ରତି ଶ୍ଳୋକ ଶେଷରେ ଘୋଷା ଆକାରରେ ଗାନ କରାଯାଏ । ଜଣେ ଗାୟକ ଶ୍ଳୋକ ପରେ ଶ୍ଳୋକ ଗାନ କରୁଥାନ୍ତି । ଅନ୍ୟମାନେ କେବଳ ପ୍ରଥମ ଶ୍ଳୋକଟିକୁ ଗାନ କରନ୍ତି ।

ପ୍ରଥମ ଶ୍ଳୋକଟିକୁ ବାରମ୍ବାର ଗାନ କରିବାର ଉଦ୍ଦେଶ୍ୟ ହେଉଛି ଯେ, ସାଧକ ଜଗତରେ ଧନ ସମ୍ପତ୍ତି ଅର୍ଜନ କରି ସମାଜରେ ପ୍ରତିଷ୍ଠା ଓ ଖ୍ୟାତି ଲାଭ କରିବାର ଲାଳସାକୁ ଭୁଲିଯାଇ ଈଶ୍ୱରଙ୍କ ଆଡକୁ ଧ୍ୟାନଦେବ ।

ଏଠାରେ 'ଡୁକୃଂ କରଣେ'ର ଅର୍ଥ ବ୍ୟାକରଣର ନିୟମମାନ କଣ୍ଠସ୍ଥ କରି ଭାଷା କହିବାରେ ପାରଦର୍ଶିତା ଲାଭ କରିବା । ଫଳରେ ମାନବ ସମାଜରେ ଖ୍ୟାତି ଲାଭ କରିବା । ଶାସ୍ତ୍ରଜ୍ଞାନ ଅର୍ଜନ କରି ବଡ ପଣ୍ଡିତ ବୋଲାଇବା ମଧ୍ୟ ଏକ ପ୍ରକାର ଧନ ରୋଜଗାର

ଅଟେ। ସେହି ଖ୍ୟାତି ଜୀବକୁ ନାନା ଯନ୍ତ୍ରଣାରୁ ରକ୍ଷା କରିପାରେ ନାହିଁ। ମରଣ ଆସିଲେ, ମନୁଷ୍ୟ ନିଜର ବହୁ ପରିଶ୍ରମ ଉପାର୍ଜିତ ଧନ ସମ୍ପତ୍ତିର ସଂସ୍ପର୍ଶରୁ ବା ଆଧିପତ୍ୟରୁ ଦୂରେଇ ଯିବାକୁ ବାଧ ହୁଏ। ଧନସମ୍ପତ୍ତିର ମୋହ ଓ ଆଧିପତ୍ୟ ମନୁଷ୍ୟକୁ ଆଦୌ ସୁଖ ଦେଇପାରେ ନାହିଁ। ଛାନ୍ଦୋଗ୍ୟ ଉପନିଷଦରେ ନାରଦ ଓ ସନତ କୁମାରଙ୍କ କଥା ମନେ ପକାଇଲେ ଆମେ ତାହା ବେଶ୍ ହୃଦୟଙ୍ଗମ କରିପାରିବା। ନାରଦ ଅତି ବିନୀତ ଭାବରେ ଆତ୍ମଜ୍ଞାନ ଲାଭ ନିମିତ୍ତ ସନତ କୁମାରଙ୍କୁ ପ୍ରାର୍ଥନା କଲେ। ନାରଦ କେଉଁ କେଉଁ ବିଷୟରେ ଜ୍ଞାନ ଅର୍ଜନ କରିଛନ୍ତି ତାହା ଜଣାଇଲେ ସେ ଜାଣିନଥିବା ବିଷୟର ଜ୍ଞାନ ଦେବେ ବୋଲି ସନତ କୁମାର କହିଲେ । ନାରଦ ସାହିତ୍ୟ, ଜ୍ୟୋତିଷ, ଗଣିତ, ଶାସ୍ତ୍ର ପୁରାଣ ଇତ୍ୟାଦି ସବୁ ପଢ଼ି, ଜାଣି ମଧ୍ୟ ସୁଖ ଶାନ୍ତି ପାଇପାରୁ ନାହାଁନ୍ତି ବୋଲି କହିଲେ। ଉତ୍ତରରେ ସନତ କୁମାର କହିଲେ, "ତୁମେ ଯାହା ସବୁ କହିଗଲ, ସେଗୁଡିକ କେବଳ ମାତ୍ର ନାମ। କିନ୍ତୁ ତୁମକୁ ସେହି ଭୂମା (ଅସୀମ)କୁ ଅନୁଭବ କରିବାକୁ ପଡିବ। ସେହି ଭୂମାକୁ ପାଇଲେ ଆଉ କୌଣସି ପଦାର୍ଥ ପାଇବାକୁ ଚାହିଁବ ନାହିଁ। ତୁମର ସମସ୍ତ ଆଶା ମେଣ୍ଟିଯିବ। ତେଣୁ ଏହି ତଥାକଥିତ ବ୍ୟାକରଣ ନିୟମ ବା ଭୌତିକ ଜ୍ଞାନ ଅର୍ଜନ ତଥା ଖ୍ୟାତି ଅର୍ଜନ ମୁଖ୍ୟବସ୍ତୁ ନୁହେଁ।"

କିନ୍ତୁ ଏହି ବ୍ୟାକରଣ ନିୟମ ବା ପାଣ୍ଡିତ୍ୟ ମୁଖ୍ୟ ନ ହେଲେ ହେଁ ଅଦରକାରୀ ନୁହେଁ। ଏଗୁଡିକ ଆବଶ୍ୟକ। ଶାସ୍ତ୍ର ଅଧ୍ୟୟନ ବା ଗୁରୁଙ୍କ ଆଦେଶରେ ଜୀବନଯାପନ କରିବା ନିମିତ୍ତ ଏହା ସାହାଯ୍ୟ କରେ। କିନ୍ତୁ ମୂଲ୍ୟବାନ ଜୀବନକୁ ଗୌଣବସ୍ତୁ ପାଇଁ ନଷ୍ଟକରି ଜୀବନ ଉଦ୍ଧାରକ ଶ୍ରେଷ୍ଠ ଆତ୍ମଜ୍ଞାନକୁ ଅବହେଳା କରିବା କେଡେ ଅବିବେକିତା, ଆଚାର୍ଯ୍ୟ ଶଙ୍କର ତାହା ଏଠାରେ ଦର୍ଶାଇଛନ୍ତି।

ମରଣ ଆସି ଯେତେବେଳେ ତୁମର ଅସ୍ତିତ୍ୱ ଦୋହଲାଇ ଦିଏ, ସେତେବେଳେ ତୁମର ଶାସ୍ତ୍ରଜ୍ଞାନ, ଧନ ସମ୍ପତ୍ତି କି ଦରକାରରେ ଆସେ ? ସମାଜରେ ତୁମର ଖ୍ୟାତି ଓ ପ୍ରତିପତ୍ତିର ବା ମୂଲ୍ୟ କ'ଣ ରହେ? ତୁମ କଥା କହିବାର ବାହାଦୂରୀ କିଛି ସାହାଯ୍ୟ କରେ କି ? ତେଣୁ ଏହି ଜଗତରେ ବଞ୍ଚିଥିବା ବେଳେ ମଣିଷର ପରମ ଓ ଚରମ କର୍ତ୍ତବ୍ୟ ହେଉଛି ଜୀବନର ଗୂଢ଼ ରହସ୍ୟକୁ ଉତ୍ତମ ଭାବେ ବିଚାର କରି ଅନୁଭବ କରିବା ଏବଂ ଏହି ବିକଶିତ ଜୀବନର ଅନ୍ତର୍ନିହିତ ପ୍ରକୃତ ସତ୍ୟକୁ ଉପଲବ୍ଧି କରି ସେହି ସତ୍ୟରେ ନିଜକୁ ମିଶାଇ ଦେବା। ଯେତେବେଳେ ଏହି ପ୍ରକାର ଭାବ ଆସିବ, ସେତେବେଳେ ମୃତ୍ୟୁର ଭୟ ରହିବ ନାହିଁ, ବରଂ ସତ୍ୟ-ଶିବ-ସୁନ୍ଦରରେ ମିଶିବା ନିମିତ୍ତ ମୃତ୍ୟୁ ରୁଦ୍ଧଦ୍ୱାରର ଚାବିକାଠି ସଦୃଶ ହେବ।

॥ ୮ ॥

ପରନ୍ତୁ ସମାଜରେ ବହୁ ପୁସ୍ତକକୀଟ ଆଶାବାଦୀ ମଣିଷ ଅଛନ୍ତି, ଯେଉଁମାନେ ଗୀତାର କେତେକ ଶ୍ଳୋକକୁ ଉଦ୍ଧାର କରି କହନ୍ତି; "ମରଣ ସମୟରେ ଯଦି ନାରାୟଣ ନାମ ସ୍ମରଣ କରିବ, ସବୁ ପାପରୁ ମୁକ୍ତ ହୋଇ ଚିରବାଞ୍ଛିତ ବସ୍ତୁ ଲାଭ କରିବ।" କାରଣ ଗୀତାରେ ଅଛି "ଶରୀରରୁ ଜୀବନ ଛାଡିଗଲା ବେଳେ ଯେଉଁ ଲୋକ ମୋତେ ସ୍ମରଣ କରିବ, ସେ ମୁକ୍ତିଲାଭ କରିବ।" କେବଳ ପୁସ୍ତକ ଜ୍ଞାନ ଦ୍ଵାରା ନିୟତିର ନିୟମକୁ କେହି ଏଡାଇଦେଇ ପାରିବେ ନାହିଁ। ଗୀତାର ୮ମ ଅଧ୍ୟାୟର ୫ମ ଶ୍ଳୋକରେ କୁହାଯାଇଛି 'ଅନ୍ତକାଳେ ଚ ମାମେବ ସ୍ମରନ୍ ମୁକ୍ତ୍ଵା କଲେବରମ୍'। 'ଅନ୍ତକାଳେ' ଶବ୍ଦ ପରେ ଏହି 'ଚ'ର ପ୍ରକୃତ ଅର୍ଥକୁ କେହି ଅନୁଭୂତିରେ ଆଣନ୍ତି ନାହିଁ। ଶଙ୍କର ଏହି 'ଚ'ର ଅର୍ଥକୁ ବୁଝାଇବାକୁ ଯାଇ କହିଛନ୍ତି, ଜୀବନ ତମାମ୍ ସେହି ପରମପ୍ରିୟଙ୍କୁ ଅହରହ ଧ୍ୟାନ କରି କରି ଶେଷରେ ମରିବା ସମୟରେ ମଧ୍ୟ (ଚ) ଧ୍ୟାନ କରୁଥିବ। ଏହା ହିଁ 'ଚ'ର ଅର୍ଥ।

ବର୍ତ୍ତମାନ 'ଭଜ'ର ଅର୍ଥ ହେଲା ପୂଜା କରିବା। ଧୂପ, ଦୀପ,ଫୁଲ, ଚନ୍ଦନ ଦେଇ ମନ୍ତ୍ରପାଠ କରିବାରେ ପୂଜା ଶେଷ ହୁଏ ନାହିଁ। ଏହି ବାହାର ପୂଜା ଭିତରେ ପୂଜକ ନିଜର ଅହଂଭାବକୁ ଭୁଲିଯାଇ ତନ୍ମୟ ଭାବରେ ଇଷ୍ଟଙ୍କୁ ସବୁ କ୍ଷେତ୍ରରେ ଉପସ୍ଥିତ ଅଛନ୍ତି ବୋଲି ବିଚାର କରି ସମସ୍ତଙ୍କୁ ସ୍ନେହଭକ୍ତିରେ ପୂଜାକରେ। ସେତେବେଳେ ଦେଶକାଳ ପାତ୍ରର ବିଚାର ରହେନାହିଁ। ପ୍ରକୃତରେ ଏହି ପ୍ରକାର ସେବା ବା ପୂଜା ଦ୍ଵାରା ଦେଶର ସମସ୍ତ ବିଭିନ୍ନତାକୁ ଏକ କରାଯାଏ। ତାହା ନ କରି ବିଭିନ୍ନ ଧର୍ମର ନୀତି ନିୟମକୁ ଜୀବନସାରା ଅନୁସରଣ କରି ପ୍ରକୃତ ଉଦ୍ଦେଶ୍ୟକୁ ଭୁଲିଯିବା ହିଁ ସାର ହୁଏ। କିନ୍ତୁ ପ୍ରକୃତ ଭଜନରେ ସାଧକ ପ୍ରେମ ଭକ୍ତିର ସହିତ ନିଜକୁ ଇଷ୍ଟଦେବଙ୍କ ଠାରେ ସମର୍ପି ଦେଇଥାଏ। ଇଷ୍ଟଙ୍କୁ ଜଗତବ୍ୟାପୀ ବୋଲି ଅନୁଭବ କରେ।

ନିଜକୁ ଇଷ୍ଟଦେବଙ୍କ ଠାରେ ପୂର୍ଣ୍ଣ ଭାବରେ ସମର୍ପଣ କରିଦେବା ଲାଗି ଯେଉଁ ଉପାୟମାନ ରହିଛି, ତାହାକୁ ନଅଟି ଭାଗରେ ବିଭକ୍ତ କରାଯାଇଛି। (୧) ଭଗବାନଙ୍କର ମହିମା **ଶ୍ରବଣ** (୨) ସେହି ପରମପୂଜ୍ୟଙ୍କର ଗୁଣ **କୀର୍ତ୍ତନ** (୩) ତାଙ୍କର ଲୀଳା ଓ ସୌନ୍ଦର୍ଯ୍ୟକୁ ଅହରହ **ସ୍ମରଣ** (୪) ନିଜର ସର୍ବସ୍ଵ ଦେଇ **ପଦସେବନ** (୫) ସୁନ୍ଦର ସୁନ୍ଦର ମନମୁଗ୍ଧକର ବେଦମନ୍ତ୍ର ପାଠକରି **ଅର୍ଚ୍ଚନା** (୬) ସମସ୍ତ ପଦାର୍ଥ ଉପହାର ଦେଇ **ବନ୍ଦନା** (୭) ନିଜକୁ ତୁଚ୍ଛ ଭାବି ସେବା କରିବା ଅର୍ଥାତ **ଦାସ୍ୟଭାବ** (୮) ଅତି ଆଦରରେ ପ୍ରଫୁଲ୍ଲ ମନରେ ତାଙ୍କ ସହ ଆଲୋଚନା ନିମିତ୍ତ ଅନୁରୋଧ ଅର୍ଥାତ୍ **ସଖ୍ୟଭାବ** (୯) ଶେଷରେ ନିଜକୁ ସେହି ପୂଜାଯଜ୍ଞରେ ପୂର୍ଣ୍ଣ ଭାବରେ ନିୟୋଜିତ କରିବା ବା **ଆତ୍ମନିବେଦନ** ଇତ୍ୟାଦି ୯ଟି ଉପାୟ। ଏହି ନଅଟି ଉପାୟରେ ପ୍ରତ୍ୟେକ ସ୍ଥଳରେ

ପୂଜା ମନୋଭାବ ବା ସେବା ମନୋଭାବ ରହିଛି। ଈଶ୍ୱର ସେବା ଅର୍ଥ ଈଶ୍ୱର ପୂଜା। ଜୀବର ସେବା ଜନାର୍ଦ୍ଦନର ସେବା।

ବର୍ତ୍ତମାନ ଗୋବିନ୍ଦର ଅର୍ଥ ବୁଝିବା। ଆଚାର୍ଯ୍ୟ ଶଙ୍କର 'ଗୋବିନ୍ଦ'ର ଚାରି ପ୍ରକାର ଅର୍ଥ କରିଛନ୍ତି। (୧) ଏହି ଜଗତର ସୃଷ୍ଟି, ସ୍ଥିତି ଓ ଲୟ ଇତ୍ୟାଦି ଯେଉଁ ଆଧାର ଉପରେ ନିଜ ନିଜର କାମ କରୁଛନ୍ତି, ସେହି ଆଧାରକୁ ଯେ ଜାଣିଛନ୍ତି। (୨) ଯେ ଏହି ଜୀବଜଗତର ମାଲିକ। ଏଠାରେ କେତେକ କହନ୍ତି ଗୋବିନ୍ଦ ଅର୍ଥ ଗୋ (ଗୋକୁଳର ଗୋରୁମାନଙ୍କର) ରାଜା। କିନ୍ତୁ ଗୋବିନ୍ଦ ଅର୍ଥ ପଶୁ ଗୁଣର ବା ସକଳ ଇନ୍ଦ୍ରିୟର ଶକ୍ତିଦାତା, ଯେଉଁ ଶକ୍ତିର ଉପସ୍ଥିତିରେ ସମସ୍ତ ଇନ୍ଦ୍ରିୟ କର୍ମରତ । (୩) ଯେଉଁ ଶକ୍ତି ବଳରେ ସମସ୍ତ ଜୀବ ନାନା ଭାଷାରେ ନିଜର ଭାବକୁ ପ୍ରକାଶ କରନ୍ତି, ସେହି ଶକ୍ତି ହିଁ ଗୋବିନ୍ଦ। (୪) ବେଦର ମହାବାକ୍ୟମାନଙ୍କରେ (ପ୍ରଜ୍ଞାନମ୍ ବ୍ରହ୍ମ, ତତ୍ତ୍ୱମସି, ଅୟଂ ଆତ୍ମା ବ୍ରହ୍ମ ଓ ଅହଂ ବ୍ରହ୍ମାସ୍ମି) ଯେଉଁ ପରମ ବିଷୟରେ କୁହାଯାଇଛି, ସେ ହିଁ ଗୋବିନ୍ଦ।

ସଂକ୍ଷେପରେ କହିଲେ ଗୋବିନ୍ଦ ହିଁ ପରମାତ୍ମା। ତାଙ୍କରି ଯୋଗୁଁ ଜଗତର ସମସ୍ତ ବସ୍ତୁର ଅସ୍ତିତ୍ୱ ରହିଛି। ସେ ପରମ ସତ୍ୟ। ଉପନିଷଦରେ ତାଙ୍କୁ ବ୍ରହ୍ମ କୁହାଯାଇଛି, ସେହି ଗୋବିନ୍ଦଙ୍କୁ ନିଜର ହୃଦୟରେ ଅନୁଭବ କର। ନିଜକୁ ତାଙ୍କ ସହିତ ମିଶାଇ ଦିଅ। ସେଥିରେ ଚିର ଶାନ୍ତି ମିଳିବ। ତାହା ନ କରି ବ୍ୟାକରଣ ନିୟମ ଘୋଷି ଭାଷାରେ ପାରଦର୍ଶିତା ଲାଭକରି ସମାଜରେ ଖ୍ୟାତି ଅର୍ଜନ କଲେ ବା ଧନ ରୋଜଗାର କଲେ ସେ ଶାନ୍ତି ମିଳିବ ନାହିଁ, ବରଂ ବୃଥାରେ ସମୟ ନଷ୍ଟ ହେବ। ତେଣୁ ଗୋବିନ୍ଦଙ୍କୁ ଭଜନ କର।

**ମୂଢ଼ ଜହୀହି ଧନାଗମତୃଷ୍ଣାଂ**
**କୁରୁ ସଦ୍‌ବୁଦ୍ଧିଂ ମନସି ବିତୃଷ୍ଣାମ୍ ।**
**ୟଲ୍ଲଭସେ ନିଜକର୍ମୋପାତ୍ତଂ**
**ବିତ୍ତଂ ତେନ ବିନୋଦୟ ଚିତ୍ତମ୍ ॥୨॥**

**(ଭଜ ଗୋବିନ୍ଦଂ ଭଜ ଗୋବିନ୍ଦଂ...)**

ମୂଢ଼ = ହେ ମୂର୍ଖ !, ଜହୀହି = ତ୍ୟାଗକର, ଧନ = ଆଗମ = ତୃଷ୍ଣାଂ = ଧନ ଅର୍ଜନ ଓ ସଂରକ୍ଷଣର ପିପାସା (ବ୍ୟାକୁଳତା), କୁରୁ = କର, ସଦ୍‌ବୁଦ୍ଧିମ୍ = ସତ୍ୟ ବିଷୟରେ ଭାବନା, ମନସି = ମନରେ, ବିତୃଷ୍ଣାଂ = ଆଗ୍ରହଶୂନ୍ୟ, ୟତ୍ = ଯାହା, ଲଭସେ = (ପୂର୍ବ କର୍ମର ଫଳ ସ୍ୱରୂପ) ପାଇଲ, ନିଜ କର୍ମ = ନିଜର କର୍ମ ଅନୁସାରେ, ଉପାତ୍ତଂ = ମିଳିଲା, ବିତ୍ତଂ = ସମ୍ପତ୍ତି, ତେନ = ତାହାରି ଦ୍ୱାରା, ବିନୋଦୟ = ତୃପ୍ତକର, ଚିତ୍ତମ୍ = ମନକୁ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ ।

*୨. ହେ ମୂର୍ଖ ! ଧନ ରୋଜଗାର ଓ ତାହାର ସଂରକ୍ଷଣର ପିପାସାକୁ ଦୂରକର । ମନରେ ସଦ୍‌ଭାବନା ଆଣ । ଇନ୍ଦ୍ରିୟ ଲାଳସା ପ୍ରତି ଆଗ୍ରହଶୂନ୍ୟ ହୁଅ । ପୂର୍ବଜନ୍ମର କର୍ମଫଳ ଅନୁସାରେ ଯାହା ମିଳିଲା, ତାହାହିଁ ତୁମର ସମ୍ପତ୍ତି, ସେଥିରେ ସନ୍ତୁଷ୍ଟ ରୁହ ।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ବହିର୍ମୁଖୀ ବ୍ୟକ୍ତି, ଇନ୍ଦ୍ରିୟ ଜନିତ କ୍ଷଣିକ ସୁଖ ଉପଭୋଗ କରିବା ପାଇଁ ପ୍ରକୃତ ସତ୍ୟଠାରୁ ଦୂରେଇ, ନିଜକୁ ଜଗତର ଅନିତ୍ୟ ବିଷୟବସ୍ତୁରେ ମଜ୍ଜେଇ ରଖେ । ଧନ ସମ୍ପତ୍ତି ରୋଜଗାର କରିବା, ଅର୍ଜନ କରିଥିବା ସମ୍ପତ୍ତି ଉପରେ ନିଜର ପ୍ରଭୁତ୍ୱ ବଜାୟ ରଖିବା ଏବଂ ସେହି ସମ୍ପତ୍ତିକୁ ନିଜ ଗନ୍ତାଘରେ ଠୁଳକରି ତୃପ୍ତିଲାଭ କରିବା ଇତ୍ୟାଦି ବାସନାଗୁଡିକ ମନୁଷ୍ୟର ଅନ୍ତରରେ ଥିବା ଶାନ୍ତିକୁ ନଷ୍ଟ କରିଦିଏ । ପରିଣାମରେ କାମନାର ତୃଷ୍ଣା ବଢ଼େ ଓ ଲୋଭ ପ୍ରବଳ ଭାବରେ ଆସେ । ମନୁଷ୍ୟ ନିଜେ ଶାଶ୍ୱତ ଶାନ୍ତିର ଆଧାର ହୋଇଥିଲେ ମଧ୍ୟ ସେହି କାମନା ଓ ଲୋଭ ଯୋଗୁଁ ସେ ନିଜକୁ ଦୁଃଖ ସଂସାରରେ ବୁଡାଇ ରଖେ ।

ଯେଉଁ ଲୋକ ନିଜର ଅଜ୍ଞାନ ଯୋଗୁଁ ଦୁଃଖଭୋଗ କରେ ତାହାକୁ ନିର୍ବୋଧ ବା ମୂଢ଼ କୁହାଯାଏ । ଧନ ରୋଜଗାରର ପିପାସା ସମସ୍ତ ଦୁଃଖର ମୂଳ କାରଣ । ତେଣୁ ସେହି ପିପାସାର କଟୁ ସମାଲୋଚନା କରି ତାହାକୁ ମନରୁ ଦୂର କରିବା ନିମିତ୍ତ ମାନବ ସମାଜକୁ

ଆହ୍ୱାନ ଦେଇଛନ୍ତି ଶଙ୍କର। ଏଠାରେ ଧନର ପ୍ରକୃତ ଅର୍ଥ ହେଉଛି ସଂସାରରେ ମନୁଷ୍ୟଙ୍କୁ କ୍ଷଣିକ ସୁଖ ଦେବା ନିମିତ୍ତ ଯାବତୀୟ ବିଷୟବସ୍ତୁ। ତେଣୁ କେବଳ ଟଙ୍କା, ସୁନା, ରୂପାକୁ ଏକମାତ୍ର ଧନ ବୋଲି କୁହାଯାଇ ନ ପାରେ।

ଧନ ନିଜେ କିଛି କରେ ନାହିଁ। ଧନ ବିରୁଦ୍ଧରେ କିଛି କହିବାର ନାହିଁ। ଧନ ତ୍ୟାଗ କରିବାକୁ ମଧ୍ୟ କେହି କହୁନାହିଁ। କିନ୍ତୁ ଧନ ସଂଗ୍ରହ ବା ରୋଜଗାର କରିବା ନିମିତ୍ତ ପ୍ରବଳ ବାସନାକୁ ତ୍ୟାଗ କରିବା ପାଇଁ କୁହାଯାଉଛି। ସାଂସାରିକ ବିଷୟବସ୍ତୁ ମଣିଷକୁ ପରମସୁଖ ପ୍ରଦାନ କରେ। ଏହିଭଳି ଭ୍ରାନ୍ତ ଧାରଣା ଏବଂ ବିଷୟବସ୍ତୁ ସକଳ ପ୍ରତି ଯେଉଁ ମମତା, ତାହା ହିଁ ଧନାଗମ ତୃଷ୍ଣା। ଜଗତର ବିଷୟବସ୍ତୁ ସକଳ ଘୃଣ୍ୟବସ୍ତୁ ନୁହଁନ୍ତି। କିନ୍ତୁ ସେହି ବିଷୟବସ୍ତୁ ପ୍ରତି ସଂପର୍କ ଶୁଦ୍ଧପୂତ ଓ ବିଚାରବନ୍ତ ଭାବେ ହେବା ଉଚିତ୍।

ମନ ଯେତେବେଳେ ଏହିପରି ବିଚାର ଦ୍ୱାରା କାମନା ଶୂନ୍ୟ ହୋଇଯାଏ ବା ମନରେ ଧନ ପ୍ରତି ବିତୃଷ୍ଣା ଭାବ ଆସିଯାଏ, ସେତେବେଳେ ସତ୍ୟ ଉପଲବ୍ଧି ନିମିତ୍ତ ଗଭୀର ଚିନ୍ତାରେ ବ୍ୟକ୍ତି ମଜ୍ଜିରହେ। ମନକୁ କର୍ମ ଜଞ୍ଜାଳରୁ ଫେରାଇ ଅଣାଗଲା ମାତ୍ରେ ମନ ଆଉ ମନ ହୋଇ ରହେ ନାହିଁ। ଚିନ୍ତା ସକଳ ଉଭେଇଯାଏ। କିନ୍ତୁ ପ୍ରକୃତିର ସ୍ୱଭାବ, କୌଣସି ସ୍ଥାନ ଶୂନ୍ୟ ହୋଇ ରହିବ ନାହିଁ। ମନ ଯେତେବେଳେ ତା'ର ଇପ୍ସିତ ବିଷୟବସ୍ତୁ ସବୁରୁ ଓହରି ଆସେ, ସେତେବେଳେ ନିଜର ସୀମାହୀନ ଆନନ୍ଦରେ ସେ ବୁଡ଼ିରହେ, କିନ୍ତୁ ଯଦି ସେ ନିଜର ଏହି ସ୍ୱଭାବକୁ ନିଜେ ଅନୁଭବ କରି ନ ପାରେ, ତେବେ ସେ ପୁଣି ଅନ୍ୟ ବିଷୟ ମଧ୍ୟରେ ମଜ୍ଜି ରହେ।

ତେଣୁ ମନର ସାଂସାରିକ ବିଷୟବସ୍ତୁ ପ୍ରତି ଯେଉଁ ପ୍ରବଳ ଆକାଂକ୍ଷା, ଉପାର୍ଜିତ ଧନରତ୍ନ ଇତ୍ୟାଦିକୁ ଠୁଳକରିବାରେ ଯେଉଁ ଲୋଭ ଓ ମମତା ତାକୁ ଧୀରେ ଧୀରେ ସଂଯତ କରି ସତ୍ୟ, ଶାନ୍ତି ଓ ଶାଶ୍ୱତ ଦିଗରେ ମନକୁ ଆଗେଇ ନେଲେ, ତାହା ସେଥିରେ ମଜ୍ଜି ରହିବ।

ଏହିପରି ଅବସ୍ଥାରେ ସାଂସାରିକ ଲୋକ ପ୍ରଶ୍ନ କରିପାରେ, ଯଦି ଧନ ରୋଜଗାର ନକରିବା ଓ ତାହାକୁ ଜମା କରି ନ ରଖିବା ତାହାହେଲେ ସୁଖରେ ବଞ୍ଚିବା କିପରି ? ଏପରି ଅବସ୍ଥାରେ ଆମକୁ ମନେ ରଖିବାକୁ ପଡିବ ଯେ ଯଦି କୌଣସି ଦାର୍ଶନିକ ଲୋକ ଅବାସ୍ତବ କଥା କହେ, ସାଂସାରିକ ଲୋକେ ତାହାର କଥା ନ ଶୁଣି ଇନ୍ଦ୍ରିୟ ଲାଳସା ତୃପ୍ତିରେ ଲାଗିଯିବେ। କିନ୍ତୁ ଯେ ପ୍ରକୃତ ଦାର୍ଶନିକ, ସେ କେବେ ଅବାସ୍ତବ ଓ ଅସମ୍ଭବ କଥା କହେନା।

ଆମେ ସୁଖରେ କିପରି ସଂସାରରେ ଚଳିବା, ସେ ବିଷୟରେ ଶଙ୍କର ଆମକୁ ଉପଦେଶ ଦେଇଛନ୍ତି। ଆମ ନିଜ କର୍ମର ଫଳାଫଳ ସ୍ୱରୂପ ଯାହା ମିଳିଲା, ସେତିକିରେ ଅତି ସନ୍ତୋଷର ସହିତ ଚଳିବା ନିମିତ୍ତ ଶଙ୍କରଙ୍କର ଆମ ପ୍ରତି ଉପଦେଶ। ମନୁଷ୍ୟର କଳ୍ପନା ତ ଅସୀମ। ଯେଉଁ ଲୋକ ନିଜକୁ ଏହି କଳ୍ପନା ସୁଅରେ ଭସାଇ ଦିଏ, ସେ ଆଉ ଥଳକୂଳ ପାଏ ନାହିଁ। ଗୋଟିଏ ବାସନାକୁ ପୂରଣ କଲାମାତ୍ରେ ଆଉ ଗୋଟିଏ ବାସନା ଆସି ଯାଇଥାଏ। ବାସନାର ଶେଷ ହୁଏ ନାହିଁ। ଅଶାନ୍ତି ଅସନ୍ତୋଷ ବଢ଼ିଚାଲେ।

ମନୁଷ୍ୟ ଜୀବନରେ ସନ୍ତୋଷ ଚାହେଁ। କିନ୍ତୁ ଧନ ବିନିମୟରେ କେବଳ ଇନ୍ଦ୍ରିୟ ତୃପ୍ତିଦାୟକ ପଦାର୍ଥ ମିଳିଥାଏ। ଏହା ଦ୍ୱାରା କିଛି ସମୟ ପାଇଁ ମନ ହୁଏତ ଶାନ୍ତ ହୋଇଯାଏ। ତେବେ ତତ୍ ସହ କାମନା ଆହୁରି ପ୍ରବଳ ବେଗରେ ଆସି ହୃଦୟର ସମସ୍ତ ଶାନ୍ତି ବିନାଶ କରି ମନକୁ ଅସ୍ଥିର କରିପକାଏ। ଏପରି ସ୍ଥଳେ ପ୍ରକୃତ ସନ୍ତୋଷ ପାଇବାକୁ ହେଲେ ସାଧୁ ଉପାୟରେ ଯାହା ମିଳିଲା, ସେତିକିରେ ତୃପ୍ତିଲାଭ କରିବା ଏବଂ ଅନ୍ୟର ଜିନିଷପତ୍ର ପ୍ରତି ଦୃଷ୍ଟି ନ ଦେବା ହିଁ ଏକମାତ୍ର ଉପାୟ। ଏହି ପ୍ରକାର ବ୍ୟକ୍ତିର ହୃଦୟରେ ଆଧ୍ୟାତ୍ମିକ ଭାବ ଜାଗ୍ରତ ହେବା ସମ୍ଭବ।

ସମ୍ପତ୍ତିର ମୋହ ବା ବାସନା ମଣିଷକୁ ଅଧୋପତିତ କରେ। ମୋହ ବା ମମତା ଅସୀମ ଯନ୍ତ୍ରଣା ଦିଏ। ରୋଜଗାର କରିଥିବା ସମ୍ପତ୍ତିର ରକ୍ଷଣାବେକ୍ଷଣ ପାଇଁ ଅହରହ ସଂଗ୍ରାମ ଚାଲେ। ବହୁ ପରିଶ୍ରମ ଉପାର୍ଜିତ ସମ୍ପତ୍ତିର କ୍ଷୟ ମନରେ ଭୀଷଣ ଯନ୍ତ୍ରଣା ଦିଏ। ମଣିଷ ଯାହା ରୋଜଗାର କରିସାରିଛି, ତା'କୁ ସାଇତି ରଖିବା ପାଇଁ ଅତି ବ୍ୟଗ୍ର ହୋଇଉଠେ। ଦୁଃଖ ଯନ୍ତ୍ରଣାର ଖେଳ ଏହିପରି ଚାଲିଥାଏ।

କଠୋପନିଷଦରେ ନଚିକେତା ବେଶ ସୁନ୍ଦର ଭାବରେ ନିଜ ଗୁରୁଙ୍କ ନିକଟରେ କହିଛନ୍ତି, "ନ ବିତ୍ତେନ ତର୍ପଣୀୟୋ ମନୁଷ୍ୟ" (କଠ-୧ : ୨୭)। ଅର୍ଥାତ୍ ଧନ ଆହରଣ ଓ ତତ୍ ସଂରକ୍ଷଣରେ ମନୁଷ୍ୟ ଶାନ୍ତି ଓ ସନ୍ତୋଷ ଲାଭ କରିପାରେ ନାହିଁ। ପୁଣି ଆଚାର୍ଯ୍ୟ ଶଙ୍କର ବୃହଦାରଣ୍ୟକ ଉପନିଷଦକୁ ବୁଝାଇବାକୁ ଯାଇ ନିଜର ବିବେକ ଚୂଡ଼ାମଣିରେ କହିଛନ୍ତି, "ଅମୃତତ୍ୱସ୍ୟ ନାଶାସ୍ତି ବିତ୍ତେନେତ୍ୟେବ ହି ଶ୍ରୁତିଃ"(ବିବେକ ଚୂଡ଼ାମଣି-୭)। ଅର୍ଥାତ୍ ଧନ ସମ୍ପତ୍ତିର ମାଲିକାନା ଦ୍ୱାରା ଅବିନାଶୀ ଅମରତ୍ୱ ଲାଭ କରାଯାଇପାରେନା।

ସେ କ୍ଷେତ୍ରରେ ଆମ ଜୀବନରେ ଏକମାତ୍ର କର୍ତ୍ତବ୍ୟ ହେଉଛି ବିଷୟବସ୍ତୁରେ ଅନାସକ୍ତ ରହିବା। ଏହି ଅନାସକ୍ତି ଫଳରେ ପ୍ରକୃତ ଆନନ୍ଦ ମିଳେ। ଈଶାବାସ୍ୟ ଉପନିଷଦ୍‌ର ପ୍ରଥମ ଶ୍ଳୋକରେ ଏହି ଋଷିବାକ୍ୟର ସତ୍ୟତା ପ୍ରମାଣ କରାଯାଇଛି। ସେଥିରେ ଲେଖାଅଛି,

"ତେନ ତ୍ୟକ୍ତେନ ଭୁଞ୍ଜୀଥାଃ ମା ଗୃଧଃ କସ୍ୟସ୍ୱିତ୍ ଧନମ୍"(ଈଶା-୧) ଅର୍ଥାତ୍ ମନରେ ଅନାସକ୍ତ ଭାବ ଆଣି ଆନନ୍ଦ ଲାଭକର। ଅନ୍ୟର ଧନକୁ ଆଶା କରନା।

**ନାରୀସ୍ତନଭରନାଭୀଦେଶଂ**

**ଦୃଷ୍ଟ୍ୱା ମା ଗା ମୋହାବେଶମ୍**

**ଏତନ୍ମାଂସବସାଦିବିକାରଂ**

**ମନସି ବିଚିନ୍ତୟ ବାରଂ ବାରମ୍ ।।୩।।**

**(ଭଜ ଗୋବିନ୍ଦଂ ଭଜ ଗୋବିନ୍ଦଂ...)**

ନାରୀ = (ଯୁବତୀ) ସ୍ତ୍ରୀ, ସ୍ତନଭର = ସୁଶୋଭିତ ସ୍ତନଦ୍ୱୟ, ନାଭୀଦେଶଂ = ଖୋଲା ନାଭିମଣ୍ଡଳ, ଦୃଷ୍ଟ୍ୱା = ଦେଖି, ମା = ହୁଅନାହିଁ, ଗା = ଶୀକାର, ମୋହ ଆବେଶମ୍ = ମମତା ଆତିଶଯ୍ୟରେ, ଏତତ୍ = ଏସବୁ, ମାଂସ = ମାଂସ, ବସ = ଚର୍ବି, ଆଦି = ଇତ୍ୟାଦି, ବିକାରଂ = ରୂପାନ୍ତର, ମନସି = ମନରେ, ବିଚିନ୍ତୟ = ଭଲ ଭାବରେ ଚିନ୍ତାକର, ବାରଂ ବାରମ୍ = ବାରମ୍ବାର, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ।

*୩. ନାରୀର ଜାନୁଯୌବନ (କୁଚଯୁଗଳ ଓ ନାଭିଦେଶ) ଦେଖି ମୋହିତ ହୁଅନାହିଁ। ସେଗୁଡିକ ମାଂସ ଓ ଚର୍ବିର ରୂପାନ୍ତର ମାତ୍ର। ଏହି କଥା ବାରମ୍ବାର ସ୍ମରଣ କର।।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ସାଂସାରିକ ଧନ ସମ୍ପତ୍ତି ଉପରେ ମମତା ନ ରଖିବାକୁ ପୂର୍ବ ଶ୍ଳୋକରେ କୁହାଯାଇଥିଲା। ବର୍ତ୍ତମାନ ଏହି ଶ୍ଳୋକରେ ନାରୀର ରକ୍ତମାଂସ ପ୍ରତି ଆସକ୍ତି ନ ରଖିବାକୁ ଉପଦେଶ ଦିଆଯାଇଛି। ଉପନିଷଦ୍‌ର ସୃଷ୍ଟି କାଳରୁ ଆଜି ପର୍ଯ୍ୟନ୍ତ ଯେଉଁ ମହାତ୍ମାଗଣ ଜଗତର ହିତ ନିମିତ୍ତ କାର୍ଯ୍ୟ କରି ଯାଇଛନ୍ତି, ସେମାନେ ପ୍ରତ୍ୟେକେ ମାନବ ସମାଜକୁ କାମିନୀ ଓ କାଞ୍ଚନ ବିଷୟରେ ସତର୍କ ରହିବା ପାଇଁ ଉପଦେଶ ଦେଇ ଯାଇଛନ୍ତି। କିନ୍ତୁ କାମିନୀ ଓ କାଞ୍ଚନକୁ ଅବଜ୍ଞା କରି ନାହାନ୍ତି। କାମିନୀ ଓ କାଞ୍ଚନର ଉପଭୋଗ ପ୍ରତ୍ୟେକ ବ୍ୟକ୍ତି ବିଶେଷର ସ୍ୱାଭାବିକ ପ୍ରବୃତ୍ତି। ପ୍ରତ୍ୟେକ ଲୋକ ଧନୀ ହେବାକୁ ଚାହେଁ ଆଉ ଚାହେଁ ନାରୀର ସମ୍ଭୋଗ।

ଜଗତରେ ସମସ୍ତ ଜୀବନ୍ତ ପ୍ରାଣୀ ଗୋଟିଏ ଲକ୍ଷ୍ୟରେ ଧାଉଁ ଅଛନ୍ତି। ସମସ୍ତଙ୍କର ଗୋଟିଏ ପ୍ରକାର ବାସନା । ଜୀବନରେ ଶାନ୍ତି ସମସ୍ତଙ୍କର କାମ୍ୟ। ଦୁଃଖରୁ ନିବୃତ୍ତି ଓ

ସୁଖର ପ୍ରାପ୍ତି ଲାଭ କରିବାକୁ ସମସ୍ତେ ଚାହାଁନ୍ତି । ଭବିଷ୍ୟତରେ ଅଭାବ ଅସୁବିଧା ଜନିତ ଅସହାୟ ଭାବନାରୁ ରକ୍ଷା ପାଇବା ପାଇଁ ଲୋକ ଧନସମ୍ପତ୍ତି ଚାହେଁ। ଧନସମ୍ପତ୍ତି ଥିଲେ ସବୁ ବାଧାବିଘ୍ନ ଏଡିଦେଇ ହେବ ବୋଲି ତାହାର ଦୃଢ଼ ଧାରଣା । ଅଭାବ ଅସୁବିଧା ଜନିତ 'ଭୟ' ରୂପକ ଶତ୍ରୁ ଆଉ ପାଖ ପଶିପାରିବ ନାହିଁ। ନିଜକୁ ନିରାପଦରେ ରଖିବା ପାଇଁ ମଣିଷ ତେଣୁ ସବୁବେଳେ ପ୍ରଚୁର ଧନରତ୍ନ ଚାହେଁ। ଏହି ପ୍ରକାର ବାସନା ଯୋଗୁଁ କୋଟିପତି ମଧ୍ୟ ନିଜ ସମ୍ପତ୍ତିରେ ସନ୍ତୁଷ୍ଟ ନ ହୋଇ ଆହୁରି ଅଧିକ ସମ୍ପତ୍ତି ଚାହେଁ।

ଯେତେବେଳେ ମଣିଷର ଅଭାବ ଅସୁବିଧାର ଭୟ ତୁଳନାତ୍ମକ ଭାବେ ଦୂର ହୋଇଯାଏ, ସେତେବେଳେ ବାସନାର ଅନ୍ୟ ଅଙ୍ଗଟି ଆପେ ଆପେ ଦେଖାଦିଏ। ସୁଖପ୍ରାପ୍ତି ନିମିତ୍ତ ତାହାର ପ୍ରବଳ ବାସନା ଆସେ। ଏହି ବାସନାକୁ ଚରିତାର୍ଥ କରିବା ପାଇଁ ସେ ଚାହେଁ ନାରୀର ସମ୍ଭୋଗ। ପୁରୁଷ ଯେପରି ନାରୀ ଉପଭୋଗ ନିମିତ୍ତ ପାଗଳ, ନାରୀ ସେହିପରି ପୁରୁଷ ନିମିତ୍ତ ପାଗଳୀ। ଉଭୟ କ୍ଷେତ୍ରରେ ଦୁଃଖ ବରାବର ସମାନ।

ଜୀବଜଗତରେ ସ୍ତ୍ରୀ ଓ ପୁରୁଷ ପ୍ରତ୍ୟେକ ପ୍ରତ୍ୟେକଙ୍କ ପ୍ରତି ଆକୃଷ୍ଟ। ଏହା ପ୍ରକୃତିର ସ୍ୱଭାବ। ମଣିଷ ବୁଦ୍ଧିମାନ; ସେ ଏହି ସ୍ୱଭାବଦତ୍ତ ଗୁଣଗୁଡିକୁ ସଂଯତ, ଶୃଙ୍ଖଳିତ କରି ଶୁଦ୍ଧପୂତ ଭାବେ ନିଜ ଲକ୍ଷ୍ୟସ୍ଥଳ ଆଡକୁ ଗତି କରିପାରେ, କିନ୍ତୁ ପଶୁ ତାହା କରିପାରେ ନାହିଁ। ପଶୁର ସ୍ୱଭାବ ଇନ୍ଦ୍ରିୟାନୁସରଣ। ବିଚାରଶକ୍ତି ତାହାର ବଡ ଦୁର୍ବଳ। କିନ୍ତୁ ମନୁଷ୍ୟ ବୁଦ୍ଧିମାନ ଓ ବିଚାରବନ୍ତ, ସେ ଇନ୍ଦ୍ରିୟମାନଙ୍କୁ ସୁସଂଯତ ଓ ଶୃଙ୍ଖଳିତ କରି ଦୈହିକ ସୁଖ ସମ୍ଭୋଗରୁ ମନକୁ ଫେରାଇ ଆଣି ଜୀବନର ମହନୀୟ ଆଦର୍ଶରେ ଗତିକରେ।

ପୂର୍ବର ଅଭ୍ୟାସ ବା ସ୍ୱଭାବର ବିରୁଦ୍ଧରେ ଯିବା ହେତୁ ସାଧନାର ପ୍ରଥମାବସ୍ଥାରେ ସାଧକ ବଡ ଅସୁବିଧାରେ ପଡେ। ମନୁଷ୍ୟର ଶରୀର ସବୁବେଳେ ଇନ୍ଦ୍ରିୟଗ୍ରାହ୍ୟ ବିଷୟବସ୍ତୁରୁ ସୁଖ ଶାନ୍ତି ପାଇବାକୁ ଚାହେଁ। କିନ୍ତୁ ତାହାର ବିବେକ ସେଥିରେ ସନ୍ତୁଷ୍ଟ ହୋଇପାରେନା। ଲକ୍ଷ୍ୟ ତାହାର ସୁଦୂର ପ୍ରସାରୀ ଓ ମହନୀୟ। ସେହି ଲକ୍ଷ୍ୟସ୍ଥଳରେ ପହଞ୍ଚିବା ନିମିତ୍ତ ସେ ଇନ୍ଦ୍ରିୟାସକ୍ତ କ୍ଷଣିକ ଭୋଗ ଲାଳସାରୁ ମନକୁ ଧୀରେ ଧୀରେ ଫେରାଇ ଆଣି ଚିର-ଆନନ୍ଦମୟ ଶାନ୍ତିପଥରେ ଲଗାଇଦିଏ। ପରିଣାମରେ କାଳକ୍ରମେ ଦେବ ଦୁର୍ଲଭ ଦିବ୍ୟ ଅନୁଭୂତି ନିଜର ଅନ୍ତର ଭିତରେ ଅନୁଭବ କରେ। ଇନ୍ଦ୍ରିୟଗ୍ରାହ୍ୟ ଭୋଗଲାଳସାରୁ ମନକୁ ଫେରାଇ ଆଣି ମହତ୍ତର ଲକ୍ଷ୍ୟରେ ନିୟୋଗ କରିବାର କୌଶଳକୁ 'ପ୍ରତିପକ୍ଷ ଭାବନା' କୁହାଯାଏ।

ମଣିଷ ଦୈହିକ ସୁଖସମ୍ଭୋଗ ପାଇଁ ସର୍ବଦା ପାଗଳ । ମଣିଷର ସେହି ପାଗଳାମିକୁ ଦୂର କରିବା ନିମିତ୍ତ ଆଚାର୍ଯ୍ୟ ଶଙ୍କରଙ୍କର ଏହି ଶ୍ଳୋକଟି ଏକ ଅବ୍ୟର୍ଥ ମହୌଷଧି । ନାରୀର ରୂପଯୌବନ ପୁରୁଷକୁ ସବୁବେଳେ ଆକୃଷ୍ଟ କରି ରଖିଛି । ସେହି ରୂପଯୌବନ ବିଷୟରେ ଟିକିଏ ଚିନ୍ତାକଲେ ଦେଖାଯାଏ, ତାହା କେବଳ ପୂତିଗନ୍ଧମୟ ମାଂସ ଓ ଚର୍ବିର ସମଷ୍ଟି । ଚର୍ମ ତାହାକୁ ଢ଼ାଙ୍କି ରଖିଛି । ମାଂସ ଓ ଚର୍ବିର ସେହି ପୂତିଗନ୍ଧମୟ ଅବସ୍ଥାକୁ ସ୍ମରଣ କଲେ, ମନରେ ତାହା ପ୍ରତି ଘୃଣା ଆସେ । ଏହି ପ୍ରକାର ଚିନ୍ତା ବା ସ୍ମରଣକୁ ପ୍ରତିପକ୍ଷ ଭାବନା କୁହାଯାଏ । ଏହି ପ୍ରତିପକ୍ଷ ଭାବନା ସାହାଯ୍ୟରେ ମନକୁ ନୂତନ ଭାବରେ ଶିକ୍ଷା ଦେଇ ଚିର ଆନନ୍ଦମୟ ଲକ୍ଷ୍ୟସ୍ଥଳକୁ ନେଲେ ନାରୀର ରୂପଯୌବନ ଆଉ ଆକର୍ଷଣୀୟ ହୋଇପାରିବ ନାହିଁ ।

ତେଣୁ 'ଭଜ ଗୋବିନ୍ଦମ୍' କାବ୍ୟର ପ୍ରଥମ ଦୁଇଟି ଶ୍ଳୋକରେ ଆଚାର୍ଯ୍ୟ ଶଙ୍କର ମଣିଷର ଦୁଇ ଦୁଃସାଧ୍ୟ ରୋଗ (କାଞ୍ଚନ ଓ କାମିନୀ) ପାଇଁ ଦୁଇଟି ଅମୋଘ ଔଷଧ ପ୍ରଦାନ କରିଛନ୍ତି । ଏହି ଦୁଇଟି ରୋଗର ଉପଶମ ହେଲେ ମଣିଷ ସମ୍ପୂର୍ଣ୍ଣ ନିରୋଗ ହୋଇଯିବ । କିନ୍ତୁ ମଣିଷ ତତ୍‌କ୍ଷଣାତ୍ ରୋଗରୁ ମୁକ୍ତି ଲାଭ କରେନାହିଁ । ଯଦିବା କେବେ କିପରି ନିରୋଗ ହୋଇଯାଏ ତଥାପି ସେହି ନିରୋଗ ଅବସ୍ଥାକୁ ସହଜରେ ରଖିପାରେନା । ଅସଂଖ୍ୟ ଯୋନି ମଧ୍ୟ ଦେଇ ଆମେ ଜନ୍ମ ନେଇଛୁ । ପ୍ରତି ଜନ୍ମରେ କେତେଗୁଡ଼ିଏ ପ୍ରଭାବଶାଳୀ ସ୍ୱଭାବ ବା ଗୁଣ ରହିଆସିଛି । ସେହି ସ୍ୱଭାବଗୁଡ଼ିକରୁ ତ୍ରାହି ପାଇବାକୁ ହେଲେ ବାରମ୍ବାର ଅଭ୍ୟାସ ନିତାନ୍ତ ଆବଶ୍ୟକ । ବିବେକ ଚୂଡାମଣିରେ ମଧ୍ୟ ଆମେ ଏହି ଭାବଧାରା ଦେଖିବାକୁ ପାଇବା ଯଥା- "ବିରଜ୍ୟ ବିଷୟବ୍ରାତାତ୍ ଦୋଷଦୃଷ୍ଟ୍ୟା ମୁହୁର୍ମୁହୁଃ ।"(ବିବେକ ଚୂଡ଼ାମଣି -୨୨)

ଜଗତର ବିଷୟବସ୍ତୁ ସବୁ ଆମରି ଉପରେ ତାଙ୍କର ଲୀଳା ଖେଳା କରୁଛନ୍ତି ଅର୍ଥାତ୍ ଆମେ ଜୀବିତ ଥିବାରୁ ସେ ସବୁକୁ ବିଭିନ୍ନ ପ୍ରକାରରେ ନିଜର ମାନସିକ କଳ୍ପନା ଯୋଗୁଁ ଦେଖିବାକୁ ପାଉଛୁ । ପ୍ରତ୍ୟେକ ଲୋକ ନିଜର ମାନସିକ ଅବସ୍ଥା ନେଇ ବିଷୟବସ୍ତୁକୁ ବିଭିନ୍ନ ଆକାରରେ ଦେଖେ । ଜଗତର ବିଷୟବସ୍ତୁକୁ ସେମାନଙ୍କ ସ୍ୱରୂପରେ ନଦେଖି ଆମର ମନମୁତାବକ ଆମେ ସେଗୁଡ଼ିକୁ ଦେଖୁ ।

ସେପରି ଅବସ୍ଥାରେ ଧୀରସ୍ଥିର ଚିତ୍ତରେ, ଗଭୀର ଅନୁସନ୍ଧାନ ବଳରେ, ବୈଜ୍ଞାନିକ ପ୍ରଣାଳୀରେ ବିଶ୍ଳେଷଣ କଲେ ବିଷୟବସ୍ତୁର ପ୍ରକୃତ ସ୍ୱରୂପ ଆମେ ବୁଝିପାରିବା । ଆମର ମାନସିକ ଭ୍ରମ ଦୂର ହୋଇଯିବ ।

ମୁହଁ ସଞ୍ଜ ସମୟରେ ବେଳେବେଳେ ବାୟୁମଣ୍ଡଳ ଧୂଳିରେ ପୂରିଯାଇଥାଏ। ସେତେବେଳେ ଆମ ନିକଟରେ ଥିବା ବସ୍ତୁଗୁଡିକ ଦୂରରେ ଥିବାପରି ଜଣାଯାଏ ଓ ତାହାର ପ୍ରକୃତ ସ୍ୱରୂପ ଆମକୁ ଜଣାପଡେ ନାହିଁ। କିନ୍ତୁ ଯେତେବେଳେ ଆମେ ସେହି ବସ୍ତୁଗୁଡିକର ଖୋଜଖବର ନେବା ପାଇଁ ଅନୁସନ୍ଧାନ ମନନେଇ ଆଗେଇ ଯାଉ, ସେତେବେଳେ ସେଗୁଡିକର ପ୍ରକୃତ ସ୍ୱରୂପ ଜଣାପଡିଯାଏ ଏବଂ ଆମର ପୂର୍ବଧାରଣା ବା ସନ୍ଦେହ ଦୂର ହୋଇଯାଏ। କାମିନୀ ଓ କାଞ୍ଚନ ମଣିଷର ବିପଦର କାରଣ ନୁହଁନ୍ତି। କିନ୍ତୁ ଆମେ ଆମର ଭ୍ରାନ୍ତ କଳ୍ପନା ବଶତଃ ସେମାନଙ୍କୁ ଅତି ମୂଲ୍ୟବାନ ମନେକରୁ ଓ ସେମାନଙ୍କୁ ପାଇବା ପାଇଁ ସମସ୍ତ ଶକ୍ତି ନିୟୋଜିତ କରୁ।

ଏହି ପ୍ରକାର ଭ୍ରମ ଯୋଗୁଁ ମଣିଷ ନାନା ପ୍ରକାର ମାୟା ମରୀଚିକା ପଛରେ ଧାଇଁ ଧାଇଁ ନିଜ ଅନ୍ତରର ଚିର ସୁଖକୁ ଜଳାଞ୍ଜଳି ଦେଉଛି।

**ନଳିନୀଦଳଗତଜଳମତିତରଳଂ**

**ତଦ୍‌ବଦ୍‌ଜୀବିତମତିଶୟଚପଲମ୍।**

**ବିଦ୍ଧି ବ୍ୟାଧ୍ୟଭିମାନଗ୍ରସ୍ତଂ**

**ଲୋକଂ ଶୋକହତଂ ଚ ସମସ୍ତମ୍ ॥୪॥**

**(ଭଜ ଗୋବିନ୍ଦଂ ଭଜ ଗୋବିନ୍ଦଂ...)**

ନଳିନୀଦଳଗତ-ଜଳମ୍ = ପଦ୍ମପତ୍ର ଉପରେ ଥିବା ଜଳ, ଅତି = ଅତିଶୟ, ତରଳଂ = ଢ଼ଳ ଢ଼ଳ ବା ଚଞ୍ଚଳ। ତଦ୍‌ବତ୍ = ସେହିପରି, ଜୀବିତମ୍ = ଜୀବନ, ଅତିଶୟ = ଅତ୍ୟନ୍ତ, ଚପଲମ୍ = ଚଞ୍ଚଳ ବା ଅସ୍ଥିର, ବିଦ୍ଧି = ବୁଝିବାକୁ ଚେଷ୍ଟାକର, ବ୍ୟାଧି-ଅଭିମାନ-ଗ୍ରସ୍ତଂ = ରୋଗ ଓ ଅହଂକାର ଦ୍ୱାରା ପୀଡିତ, ଲୋକ = ସଂସାର, ଶୋକ = ଶୋକ, ହତ = ଜର୍ଜ୍ଜରିତ, ଚ = ଏବଂ, ସମସ୍ତମ୍ = ସମସ୍ତ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ।

*୪. ପଦ୍ମପତ୍ର ଉପରେ ଜଳବିନ୍ଦୁ ଯେପରି ସବୁବେଳେ ଢ଼ଳଢ଼ଳ ହେଉଥାଏ, ଜୀବନଟା ମଧ୍ୟ ସବୁବେଳେ ସେହିପରି ଢ଼ଳଢ଼ଳ ବା ଅସ୍ଥିର। ସେଥିରେ ପୁଣି ରୋଗ ଓ ଅହଂକାରରେ ଏହି ସମସ୍ତ ସଂସାର ଜର୍ଜ୍ଜରିତ। ଏ କଥା ସବୁବେଳେ ମନେ ରଖ।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ସୁସ୍ଥ ମାନବର ଜୀବନଯାତ୍ରାରେ କାମିନୀ ଓ କାଞ୍ଚନର ସ୍ଥାନ କେଉଁଠି ତାହା ବିଚାର କରିବା ନିମିତ୍ତ ପୂର୍ବର ଶ୍ଳୋକ ଦୁଇଟି ସମ୍ୟକ୍ ଧାରଣା ଦେଇଛନ୍ତି। ସମୁଦ୍ର

ଭିତରେ ଭୀଷ୍ମଶିଳା ଲୁକ୍କାୟିତ ଭାବେ ରହିଥାଏ। ଜାହାଜଗୁଡିକ ସେହି ଶିଳାମାନଙ୍କର ଅବସ୍ଥିତି ଜାଣି ନ ପାରି, ଯାତ୍ରା ପଥରେ ଗତି କରୁ କରୁ ଶିଳାମାନଙ୍କରେ ଆଘାତପ୍ରାପ୍ତ ହୋଇ ଭାଙ୍ଗି ଚୂର୍‌ମାର୍ ହୋଇଯାଆନ୍ତି। କେହି କେହି ମନେକରି ପାରନ୍ତି କାମିନୀ ଓ କାଞ୍ଚନ ସଂସାର ସମୁଦ୍ରରେ ଭୀଷ୍ମଶିଳା ହୋଇ ଜୀବନ-ତରୀକୁ ଭାଙ୍ଗି ଚୂର୍‌ମାର୍ କରିଦେବେ, କିନ୍ତୁ ତାହା ନୁହେଁ। ଏହି ଶ୍ଳୋକରେ ଆଚାର୍ଯ୍ୟ ଶଙ୍କର ଜୀବନର କ୍ଷଣସ୍ଥାୟୀତ୍ୱକୁ ଅନୁଭବ କରିବା ନିମିତ୍ତ ସୁନ୍ଦର ଉଦାହରଣ ଦେଇ ବୁଝାଇ ଦେଇଛନ୍ତି। ପଦ୍ମପତ୍ରସ୍ଥିତ ଜଳବିନ୍ଦୁ ଯେପରି ଅହରହ ଢ଼ଳଢ଼ଳ, ମନୁଷ୍ୟର ଜୀବନ ସେହିପରି ଢ଼ଳଢ଼ଳ ବା ଅସ୍ଥିର। ନିଜର ତୀକ୍ଷ୍ଣ ଦୂରଦୃଷ୍ଟି ଦ୍ୱାରା ଶଙ୍କର ଏହା ଉତ୍ତମ ରୂପେ ଉପଲବ୍ଧି କରିପାରିଛନ୍ତି। ଜୀବନ ଏକେତ ଅତ୍ୟନ୍ତ ଅସ୍ଥିର, ସେପରି ଅବସ୍ଥାରେ ପୁଣି ସେ ରୋଗ, ଅହଂକାର ଇତ୍ୟାଦିରେ ସର୍ବଦା ଜଡିତ। ଏସବୁ ପୁଣି ସେହି ଅସ୍ଥିର ଜୀବନକୁ କ୍ଷୟ କରିବାରେ ଲାଗିଛନ୍ତି।

ଏହି ଶ୍ଳୋକର ପ୍ରଥମାର୍ଦ୍ଧରେ ଶଙ୍କର ଜୀବନର କ୍ଷଣଭଙ୍ଗୁରତାକୁ ପ୍ରମାଣ କରି ଦ୍ୱିତୀୟାର୍ଦ୍ଧରେ ଦୁଃଖ ଜଞ୍ଜାଳମୟ ଜଗତର ସ୍ୱଭାବକୁ ଚିତ୍ରଣ କରିଅଛନ୍ତି। ବାସ୍ତବିକ, ଜୀବ ଓ ଜଗତକୁ ଏପରି ସୁନ୍ଦର ଭାବେ ଚିତ୍ରଣ କରି ଅତି କୌଶଳରେ ପ୍ରତିପକ୍ଷ ଭାବନା କିପରି କରିବା, ତାହା ଦର୍ଶାଇଛନ୍ତି।

ଜୀବନ ଯେତେବେଳେ କ୍ଷଣସ୍ଥାୟୀ, ସଂସାର ଦୁଃଖ ଜଞ୍ଜାଳମୟ, ସେ କ୍ଷେତ୍ରରେ ମୁହୂର୍ତ୍ତ ଟିଏ ବି ନଷ୍ଟ ନ କରିବା ହିଁ ଏ ଶ୍ଳୋକର ଉଦ୍ଦେଶ୍ୟ। ଅକୁହା, ଅପୁଛା, ଅଜଣା ଓ ଅଶୁଣା ଭାବରେ ମରଣ ଆସେ। ଆସେ ଗରିବର କୁଡିଆରେ, ଧନୀର ପ୍ରାସାଦରେ, ଆସେ ନିରାଟ ମଫସଲରେ ପୁଣି କୋଳାହଳମୟୀ ନଗରୀରେ। କୌଣସି ଲୋକ କିମ୍ବା କୌଣସି ସ୍ଥାନ ବାଦ୍ ଯାଏନାହିଁ। ତେଣୁ ସେଥିରୁ ତ୍ରାହି ପାଇବା ପାଇଁ ବିନା କାଳବିଳମ୍ବରେ ଆପ୍ରାଣ ଚେଷ୍ଟା କରିବା ଆବଶ୍ୟକ। ତାହା ପୁଣି ଏହିଠାରୁ ଓ ଏହି ମୁହୂର୍ତ୍ତରୁ। ଏହି ବିଷୟ ଚିନ୍ତା କଲାବେଳେ ସେ କାଳର ବୁଦ୍ଧଦେବଙ୍କ କଥା ମନେପଡେ ଯଥା:= "ସର୍ବଂ ଦୁଃଖଂ ଦୁଃଖଂ, ସର୍ବଂ କ୍ଷଣିକଂ କ୍ଷଣିକଂ"। ଅର୍ଥାତ୍ ସମସ୍ତ ଦୁଃଖମୟ ଓ ସମସ୍ତ କ୍ଷଣସ୍ଥାୟୀ।

କବିତ୍ୱ ଚାତୁରୀରେ ଶଙ୍କର ଜୀବନର କ୍ଷଣଭଙ୍ଗୁରତାକୁ ପଦ୍ମପତ୍ରରେ ଥିବା ଜଳବିନ୍ଦୁର ଅସ୍ଥିରତା ସଙ୍ଗେ ତୁଳନା କଲେ ମଧ୍ୟ ଏହାର ବୈଦାନ୍ତିକ ବିଶ୍ଳେଷଣ ରହିଛି। ଆମକୁ ମନେ ରଖିବାକୁ ହେବ ଯେ ଶଙ୍କର ଜଣେ ପରମ ଅଦ୍ୱୈତବାଦୀ।

ପଦ୍ମ ଜଳରୁ ଜାତହୁଏ, ଜଳରେ ରହେ ଓ ଜଳଦ୍ୱାରା ପରିପୁଷ୍ଟ ହୁଏ। ଶେଷରେ ଜଳରେ ଲୀନ ହୁଏ। ତେଣୁ ପଦ୍ମ ଜଳ ବ୍ୟତୀତ ଅନ୍ୟ କିଛି ନୁହେଁ। କେବଳ ଅନ୍ତରାଳର ବୀଜ ଯୋଗୁଁ ନାନା ଭାବରେ ବିକାଶ ଲାଭ କରିଛି ମାତ୍ର।

ସେହି ଅନନ୍ତ ଅଦ୍ୱିତୀୟ ବ୍ରହ୍ମ ସ୍ୱ ସଂକଳ୍ପ ଯୋଗୁଁ ନିଜକୁ ସୂକ୍ଷ୍ମଶରୀର* ରୂପୀ ପଦ୍ମରେ ପ୍ରକାଶ କରନ୍ତି। ଅପରିସୀମ ସଚ୍ଚିଦାନନ୍ଦ ସୂକ୍ଷ୍ମ ଶରୀର ମାଧ୍ୟମରେ ଅଭିବ୍ୟକ୍ତ ହୋଇ ଜୀବ ନାମରେ ନାମିତ ହୁଅନ୍ତି। ତାହା ସର୍ବଦା ଚଞ୍ଚଳ ଓ ଅସ୍ଥିର। କିନ୍ତୁ ଯେତେବେଳେ ସେହି ସୂକ୍ଷ୍ମଶରୀର ନିଜର ମୂଳଭିତ୍ତି ବିଷୟରେ ଅନୁସନ୍ଧାନ କରେ, ତାହାର ଭ୍ରମ ଧାରଣା ଦୂର ହୋଇଯାଏ। ପଦ୍ମ ଜଳରେ ଲୀନ ହେବା ପରି ଆରୋପିତ ସୂକ୍ଷ୍ମ ଶରୀର ସଚ୍ଚିଦାନନ୍ଦରେ ଲୀନ ହୋଇଯାଏ। ଅଦ୍ୱୈତ ଦର୍ଶନର ଶିଷ୍ୟମାନେ ଏକଥା ଉପଯୁକ୍ତ ଭାବେ ବୁଝିପାରିବେ।

ପଦ୍ମପତ୍ର ଉପରେ ଢ଼ଳଢ଼ଳ ଜଳବିନ୍ଦୁଟି ବୃହତ୍ ଜଳାଶୟର ଜଳରେ ମିଶିଯାଏ। ଏହି ବିଷୟରେ ଧ୍ୟାନକଲେ ବେଦର ସେହି ମହାବାକ୍ୟ 'ତତ୍ତ୍ୱମସି' ଆମର ମନେ ପଡିଯାଏ।

**ଯାବତ୍‌ବିତ୍ତୋପାର୍ଜନସକ୍ତଃ**

**ତାବନ୍ନିଜପରିବାରୋ ରକ୍ତଃ।**

**ପଶ୍ଚାଜ୍ଜୀବତି ଜର୍ଜରଦେହେ**

**ବାର୍ତାଂ କୋଽପି ନ ପୃଚ୍ଛତି ଗେହେ ॥୫॥**

**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

ଯାବତ୍ = ଯେଉଁ ପର୍ଯ୍ୟନ୍ତ, ବିତ୍ତ = ଧନସମ୍ପତ୍ତି, ଉପାର୍ଜନ = ଉପାର୍ଜନ, ସକ୍ତଃ = ସକ୍ଷମ, ତାବତ୍ = ସେ ପର୍ଯ୍ୟନ୍ତ, ନିଜପରିବାରଃ = ନିଜର କୁଟୁମ୍ବ, ରକ୍ତଃ = ଆସକ୍ତ, ପଶ୍ଚାତ୍ = ପରେ ଅର୍ଥାତ୍ ବାର୍ଦ୍ଧକ୍ୟ ଅବସ୍ଥାରେ, ଜୀବତି = ଜୀବନଯାପନ କରେ, ଜର୍ଜର = ଜରାଜୀର୍ଣ୍ଣ, ଦେହେ = ଶରୀରରେ, ବାର୍ତାଂ = ପଦେ କଥା, କୋଽପି = କେହି ଜଣେହେଲେ ମଧ୍ୟ, ନ = ନାହିଁ, ପୃଚ୍ଛତି = ପଚାରନ୍ତି, ଗେହେ = ଘରେ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ।

*୫. ଯେଉଁ ପର୍ଯ୍ୟନ୍ତ ରୋଜଗାର କରିବାର କ୍ଷମତା ଥାଏ, ନିଜର କୁଟୁମ୍ବ ଲୋକେ ତୁମ ପ୍ରତି ଅନୁରକ୍ତ ଥାଆନ୍ତି। କିନ୍ତୁ ପରେ ବୃଦ୍ଧାବସ୍ଥାରେ ରୋଜଗାର କରିବାର କ୍ଷମତା କମିଗଲେ ତୁମକୁ ପଦେହେଲେ କେହି ପଚାରନ୍ତି ନାହିଁ। ଅର୍ଥାତ୍ ପଦେ କଥା ହେବା ପାଇଁ ଆଗ୍ରହ ପ୍ରକାଶ କରନ୍ତି ନାହିଁ।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

---

*ମନ-ବୁଦ୍ଧିର ଉପକରଣ ଦ୍ୱାରା ମୁଖ୍ୟତଃ ଗଠିତ ଅନୁଭବ ଓ ଭାବନାର ସାଧନକୁ ବେଦାନ୍ତରେ 'ସୂକ୍ଷ୍ମଶରୀର' କୁହାଯାଏ।

ମଣିଷ ପଶୁପରି ସ୍ୱାର୍ଥପର । ପାଇବା ଆଶାରେ ସେ ଅନ୍ୟକୁ ସାହାଯ୍ୟ କରିଥାଏ । । ଯେଉଁଠାରେ ପାଇବାର ଆଶା ନ ଥାଏ, ଦେବାର ପ୍ରଶ୍ନ ସେଠାରେ ନ ଥାଏ । ଏହାହିଁ ବୋଧେ ଜଗତର ନିୟମ । ଏହି ନିୟମର ବଶବର୍ତ୍ତୀ ହୋଇ ଏକା ପରିବାର ମଧ୍ୟରେ ପ୍ରତ୍ୟେକ ପରସ୍ପର ସହ ରକ୍ତର ସଂପର୍କରେ ବାନ୍ଧି ହୋଇ ରହିଥିଲେ ମଧ୍ୟ ରୋଜଗାରର ତାରତମ୍ୟ ନେଇ ସ୍ନେହମମତାରେ ତାରତମ୍ୟ ଦେଖାଇଥାନ୍ତି । ବାପା-ମା, ଭାଇ-ଭଉଣୀ, ସ୍ୱାମୀ-ସ୍ତ୍ରୀ ଇତ୍ୟାଦି କୌଣସି ପ୍ରକାର ସମ୍ପର୍କ ସେଠାରେ କାମ କରେନାହିଁ । ମୋଟ ଉପରେ ପରିବାର ଭିତରେ ଯାହାର ବେଶୀ ରୋଜଗାର ଓ ସଞ୍ଚୟ, ସେହି ସଂଚିତ ଅର୍ଥରେ ଅନ୍ୟମାନେ ଉପକୃତ ହେବାର ଆଶାରଖି ତାହାକୁ ଯଥା ସମ୍ମାନ ଓ ସ୍ନେହ ଦେଇଥାନ୍ତି ।

ପ୍ରକୃତରେ ଏହା ସତ୍ୟ ବୋଲି ମନେ କରାଯାଏ । କିନ୍ତୁ ଏହି ସତ୍ୟର ଅନ୍ତରାଳରେ ଥିବା ଅନ୍ୟ ଏକ ସତ୍ୟ ପ୍ରତି କେହି ଦୃଷ୍ଟିପାତ କରନ୍ତି ନାହିଁ । ଏହା ହିଁ ପରିତାପର ବିଷୟ । କାରଣ ଧନ ଯଦି ସର୍ବଶକ୍ତିମାନ, ତାହାହେଲେ ଧନ ବଳରେ ବଳିୟାନ ଲୋକ ଧନଶୂନ୍ୟ ଅବସ୍ଥାରେ ବଳହୀନ ହୋଇ ଯାଆନ୍ତା ବା ଧନଦ୍ୱାରା ଯଦି ସମସ୍ତ ସୁଖ କିଣାଯାଇ ପାରନ୍ତା, ଧନ ନ ଥିଲେ ମଣିଷ ଦୁଃଖରେ ଭାଙ୍ଗିପଡନ୍ତା । କିନ୍ତୁ ତାହା ହେଉନାହିଁ ।

ବିତ୍ତ ଉପାର୍ଜନ ଶକ୍ତିକୁ ଏଠାରେ ବ୍ୟାପକ ଅର୍ଥରେ ନିଆଯାଇଛି । ବ୍ୟାପକ ଅର୍ଥର ଉଦ୍ଦେଶ୍ୟ ହେଉଛି ଯେଉଁ ଯେଉଁ ବସ୍ତୁ ମଣିଷକୁ ସୁଖସମ୍ଭୋଗ ଦିଏ, ତାହାହିଁ ବିତ୍ତ; ଯଥା ବୈଜ୍ଞାନିକର ବିଜ୍ଞାନ ବୁଦ୍ଧି, ରାଜନୀତିଜ୍ଞର କୂଟନୀତି, ଶିକ୍ଷକର ଶିକ୍ଷାଦାନ ଶକ୍ତି, ଉତ୍ପାଦନକାରୀର ଉତ୍ପାଦିକା ଶକ୍ତି ବା ଶିଳ୍ପୀର ଶିଳ୍ପନୈପୁଣ୍ୟ । ସେମାନେ ପ୍ରତ୍ୟେକ ନିଜ ନିଜର ରାସ୍ତାରେ ଉନ୍ନତି କରିପାରିଲେ ସୁଖୀ ହୁଅନ୍ତି । କିନ୍ତୁ ମଣିଷ ଜୀବନ କ୍ଷୟଶୀଳ । ତାହାର ଶରୀର, ଶକ୍ତି, ବିଦ୍ୟା, ବୁଦ୍ଧି କାଳର ପ୍ରଭାବରେ କ୍ଷୟ ହୋଇଯାଏ ।

ଶଙ୍କର ମଣିଷ ଜୀବନର ଏହି ମୌଳିକ ସତ୍ୟକୁ ସମ୍ମୁଖରେ ରଖି ଲେଖିଛନ୍ତି ଯେ ମଣିଷ ଯେ ପର୍ଯ୍ୟନ୍ତ ବିତ୍ତ ଉପାର୍ଜନ ନିମିତ୍ତ କ୍ଷମ, ସେହି ପର୍ଯ୍ୟନ୍ତ ସେ ଲୋକଙ୍କର ଆଦରର ପାତ୍ର ହୋଇଥାଏ । କିନ୍ତୁ ଜରାବ୍ୟାଧି ଯେତେବେଳେ ମଣିଷକୁ ଗ୍ରାସ କରନ୍ତି, ତାର ରୋଜଗାର କରିବାର କ୍ଷମତା କମିଯାଏ, ପରିଜନମାନେ ତାହାଠାରୁ ଆଉ କୌଣସି ପ୍ରକାରର ସ୍ୱାର୍ଥ ହାସଲ କରିବାର ଆଶା ନ ପାଆନ୍ତି, ସେତେବେଳେ ତାକୁ କେହି ପଚାରନ୍ତି ନାହିଁ । ଏହା ହିଁ ଦୁନିଆର ଦୁଃଖଦାୟକ ଘଟଣା ।

ଏପରି କ୍ଷେତ୍ରରେ ଆଗରୁ ସତର୍କ ରହିବା ଅର୍ଥ ନିଜକୁ ଶକ୍ତିଶାଳୀ କରି ଗଢ଼ି ରଖିବା। ତେଣୁ ଯିଏଯେତେ ରୋଜଗାର କରି ତାହାର ବନ୍ଧୁ ପରିଜନଙ୍କୁ ଦେଉ, ଯେତେ ସ୍ନେହ, ସହାନୁଭୂତି ଓ ସମ୍ମାନ ଅର୍ଜନ କରୁ ପଛେ ସବୁବେଳେ ତାହାର ମନେରଖିବା ଉଚିତ ଯେ ଏହି ଦେବାନେବା ବା ସମ୍ମାନ, ଖ୍ୟାତି ଲାଭ କରିବା ଜୀବନର ଏକାନ୍ତ (ପରମ) ଲକ୍ଷ୍ୟ ନୁହେଁ। କେଉଁ ଉପାୟରେ ଅନ୍ତରରେ ଶାନ୍ତି ମିଳି ପାରିବ, ଜଗତଜନର ନିନ୍ଦା ପ୍ରଶଂସା ଓ ଛଳନାରେ ଭୁଲି ନ ଯାଇ ଆତ୍ମଶାନ୍ତିରେ ରହିବାକୁ ହେବ, ତାହା ଶିଖିବା ଉଚିତ। ଆତ୍ମାଭିମାନ (ଅହଂକାର) ଭୁଲିଗଲେ ଶାନ୍ତି ଆପେ ଆପେ ଆସିଯିବ।

ଜୀବନରେ ଅହମିକାକୁ ଦୂର କରିବା ନିମିତ୍ତ ଯେଉଁ ବିସ୍ତୃତ ଭାବନାର ଆବଶ୍ୟକ, ତାହା ଏହି ଶ୍ଳୋକରେ ଉତ୍ତମ ରୂପେ ବୁଝାଇ ଦିଆଯାଇଛି। ଏହି ବିସ୍ତୃତ ଭାବନା ଦ୍ୱାରା ମନ ଭ୍ରାନ୍ତ ଅହମିକାରୁ ଦୂରେଇ ଯାଇ ଜୀବନର ମହତ୍ ଲକ୍ଷ୍ୟ ଆଡକୁ ଗତି କରିବ। ପୁଣି ସେଥିରେ ବିଳମ୍ବର ପ୍ରଶ୍ନ ନାହିଁ। ମନ ଓ ବୁଦ୍ଧି ଯେତେବେଳେ ଖୁବ୍ ସତେଜ ଏବଂ କାର୍ଯ୍ୟକ୍ଷମ, ସେହି ମୁହୂର୍ତ୍ତରେ ଓ ସେହିଠାରୁ ଏହି ଭାବନା ଆଣିବା ଉଚିତ।

ପ୍ରତ୍ୟେକ ଯୁବକ ଓ ଯୁବତୀ ଜୀବନ ଯୁଦ୍ଧରେ ସଂଗ୍ରାମ କରି ଚାଲନ୍ତୁ। ଧନ ରୋଜଗାର କରି ଉନ୍ନତିରୁ ଉନ୍ନତିଆଡକୁ ଆଗେଇ ଚାଲନ୍ତୁ। ଦେଶ ଓ ଜାତିର ସେବାରେ ଓ ଉନ୍ନତିରେ ଆତ୍ମବଳି ଦିଅନ୍ତୁ, କିନ୍ତୁ ଏସବୁ କ୍ରିୟାକଳାପକୁ ଆନୁଷଙ୍ଗିକ କର୍ମ ବୋଲି ସ୍ମରଣ କରି ଆଗେଇ ଚାଲନ୍ତୁ। କାରଣ ଜୀବନର ମୂଳଲକ୍ଷ୍ୟ ହେଉଛି ଆତ୍ମଶୁଦ୍ଧି କରି ଚିର ଶାନ୍ତି ବା ପୂର୍ଣ୍ଣତା ଲାଭ କରିବା। ଅକର୍ମଣ୍ୟ ହୋଇ ଜଗତରେ ଘୃଣ୍ୟ ବା ପରିତ୍ୟକ୍ତ ହେବା ପୂର୍ବରୁ ଜଗତର ନିନ୍ଦା ପ୍ରଶଂସାର ଊର୍ଦ୍ଧ୍ୱକୁ ଉଠି ଆତ୍ମତୃପ୍ତିରେ ନିଜକୁ ନିୟୋଜିତ କରି ରୁହନ୍ତୁ- ଏହା ହିଁ ଏ ଶ୍ଳୋକର ତାତ୍ପର୍ଯ୍ୟ।

**ଯାବତ୍ପବନୋ ନିବସତି ଦେହେ**

**ତାବତ୍ପୃଚ୍ଛତି କୁଶଳଂ ଗେହେ ।**

**ଗତବତି ବାୟୌ ଦେହାପାୟେ**

**ଭାର୍ଯ୍ୟା ବିଭ୍ୟତି ତସ୍ମିନ୍କାୟେ ॥୬॥**

**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

ଯାବତ୍ = ଯେ ପର୍ଯ୍ୟନ୍ତ, ପବନଃ = ନିଶ୍ୱାସ ପ୍ରଶ୍ୱାସ(ପ୍ରାଣବାୟୁ), ନିବସତି = ବାସ କରୁଛି ବା ବହୁଛି, ଦେହେ = ଶରୀରରେ, ତାବତ୍ = ସେ ପର୍ଯ୍ୟନ୍ତ, ପୃଚ୍ଛତି = ପଚାରନ୍ତି, କୁଶଳଂ = ଭଲମନ୍ଦ ଖବର, ଗେହେ = ଘରେ, ଗତବତି = ବାହାରି ଗଲେ, ବାୟୌ = ନିଶ୍ୱାସ ପ୍ରଶ୍ୱାସ (ପ୍ରାଣବାୟୁ), ଦେହ ଅପାୟେ = ଶରୀର ନଷ୍ଟ ହେବାବେଳେ, ଭାର୍ଯ୍ୟା = ନିଜର ସ୍ତ୍ରୀ, ବିଭ୍ୟତି = ଭୟକରେ, ତସ୍ମିନ୍ କାୟେ = ତୁମର ସେହି ଶରୀରକୁ । ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ ।

*୬. ଯେ ପର୍ଯ୍ୟନ୍ତ ତୁମ ଶରୀରରେ ନିଃଶ୍ୱାସ ବହୁଛି, ସେ ପର୍ଯ୍ୟନ୍ତ ଲୋକେ ତୁମ ଘରେ ତୁମର ଭଲମନ୍ଦ ଖବର ପଚାରନ୍ତି । କିନ୍ତୁ ଥରେ ତୁମ ଦେହରୁ ସେହି ପବନ ବାହାରିଗଲେ, ତୁମ ଶରୀର କ୍ଷୟ ହୋଇଆସେ, ସେତେବେଳେ ତୁମର ସ୍ତ୍ରୀ ମଧ୍ୟ ତୁମର ସେହି ଶରୀରକୁ ଭୟକରେ ।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ପରମ ଆନନ୍ଦ ଉପଭୋଗ କରିବାକୁ ହେଲେ, ଗଭୀର ଚିନ୍ତା ଓ ଅଭ୍ୟାସ ଦ୍ୱାରା ସାଂସାରିକ ବିଷୟବସ୍ତୁ ପ୍ରତି ମମତା ଓ ଅନ୍ତଃସାରଶୂନ୍ୟ ଉପଭୋଗକୁ ଦୂର କରିବାକୁ ହେବ । କେତେକ ଶାସ୍ତ୍ରରେ ବିଶେଷତଃ ବୌଦ୍ଧ ଗ୍ରନ୍ଥମାନଙ୍କରେ ଏହି ତ୍ୟାଗ ମନୋବୃତ୍ତି ଉପରେ ଏତେ ଗୁରୁତ୍ୱ ଦିଆଯାଇଛି ଯେ, ଯାହା ଫଳରେ ଜୀବନଯାତ୍ରାରେ ଅଗ୍ରସର ହେବା ନିମିତ୍ତ ଆଗ୍ରହ ରହୁନାହିଁ । ଜୀବନ ବଡ଼ ନୀରସ ଓ ଶୁଷ୍କ ହୋଇଯାଉଛି ।

ଭଗବତ୍ ଚିନ୍ତା ଓ ଧ୍ୟାନ କେବେହେଲେ ସାଧକ ମନରେ ହତାଶ ଭାବ ଆଣି ଦିଏନା । ତା' ବୋଲି ସାଂସାରିକ ସୁଖ ଓ କ୍ଷଣିକ ଆତ୍ମବଡ଼ିମା ନେଇ ସ୍ୱପ୍ନ ଦେଖିବା ଅନୁଚିତ । ବୈଦାନ୍ତିକ ଗୁରୁଗଣ ଏଥି ନିମିତ୍ତ ଅତ୍ୟନ୍ତ ସାବଧାନ ରହିଥାଆନ୍ତି ।ତେଣୁ ମନୁଷ୍ୟ ଯେତେବେଳେ ଇନ୍ଦ୍ରିୟ ଲାଳସା ଚରିତାର୍ଥ ପାଇଁ ପାଗଳ ହୋଇଉଠେ, ବୈଦାନ୍ତିକ ଗୁରୁଗଣ ସେମାନଙ୍କୁ ସେହି ପଥରୁ ନିବୃତ୍ତ କରନ୍ତି ଓ ଜନସେବାରେ ନିଜକୁ ନିୟୋଜିତ କରି ତଦ୍ୱାରା ଅନ୍ତର୍ମୁଖୀ ହେବାକୁ ଅହରହ ଉପଦେଶ ଦେଇଥାନ୍ତି ।

ପୁରାଣ ଯୁଗର ମୁନିଗଣ ଆଦର୍ଶ ଓ ବୈଜ୍ଞାନିକ ପ୍ରଣାଳୀରେ ବିଷୟ ବାସନା ପ୍ରତି ଅନାସକ୍ତ ହୋଇ ଜୀବନର ପ୍ରକୃତ ମୂଲ୍ୟ ଅନୁଭବ କରିଥିଲେ ଏବଂ ସେହି ଅନୁଭୂତିକୁ ନୂତନ ସାଧକମାନେ ନିଷ୍ଠାର ସହିତ କିପରି ଅନୁଭବ କରିପାରିବେ, ତାହା ଅତି ନିଖୁଣଭାବେ ଚିତ୍ରଣ କରିଥିଲେ। ସେ ସବୁର ଅନୁସରଣ ଦ୍ୱାରା ସାଧକର ଚିତ୍ତ ଶୁଦ୍ଧ ହୁଏ ଓ ପୂର୍ବର ଭ୍ରମଧାରଣା ଦୂର ହୋଇଯାଏ। ବୈଦାନ୍ତିକ ଗୁରୁଗଣ ସେହି ଅବସ୍ଥାରୁ ସାଧକମାନଙ୍କୁ ନେଇ ଅନ୍ୟ ଏକ ଆଦର୍ଶ ଜୀବନରେ ପହଞ୍ଚାଇବା ପାଇଁ ଅତ୍ୟନ୍ତ ଯତ୍ନଶୀଳ ଥା'ନ୍ତି।

ପାଶ୍ଚାତ୍ୟ ସମାଲୋଚକଗଣ ଏହି ଶ୍ଲୋକର ଗୂଢ଼ତତ୍ତ୍ୱକୁ ଅନୁଭବ ନ କରି ତାହାର ବିପକ୍ଷରେ ଆଲୋଚନା କରନ୍ତି, କାରଣ ପ୍ରାଚ୍ୟ ଦାର୍ଶନିକଗଣ ମଣିଷକୁ ସକଳ ପ୍ରକାର ସାଂସାରିକ ସୁଖ ସମ୍ଭୋଗ ଚେଷ୍ଟାରୁ ନିବୃତ୍ତ କରାଇ ଏକ ନିରସ ଶୁଷ୍କ ଜୀବନଯାପନ କରିବାକୁ ଉପଦେଶ ଦେଇଛନ୍ତି ବୋଲି ସେମାନେ ସିଦ୍ଧାନ୍ତ କରି ନେଇଛନ୍ତି।

ସଂକ୍ଷେପରେ କହିବାକୁ ଗଲେ, ଜୀବନସାରା ଶରୀର ପୂଜାରେ ଅର୍ଥାତ୍ ଧନସମ୍ପତ୍ତି ଅର୍ଜନ କରି ସୁଖସମ୍ଭୋଗ ନିମିତ୍ତ ମନୁଷ୍ୟ ଯଦି ଅହରହ ଯତ୍ନଶୀଳ ହୁଏ, ତାହାହେଲେ ସେ ଏକ ମସ୍ତବଡ ନିର୍ବୋଧତାର ପରିଚୟ ଦିଏ ଓ ମଣିଷ ଅଧୋଗତି ଲାଭକରେ। କାରଣ ଶରୀର ଯଦି ପୂଜାର ବିଷୟ ହୁଏ, ସେଥିରେ ଶାନ୍ତି ବା ଆନନ୍ଦ ମିଳେନାହିଁ। ଶରୀର କ୍ଷୟଶୀଳ। ସେଥିରେ ପୁଣି ଜରାବ୍ୟାଧି ରହିଛି। ସୁସ୍ଥ ସବଳ ଶରୀରକୁ ଗ୍ରାସ କରିବାକୁ ସେମାନଙ୍କୁ ବେଶୀ ସମୟ ଲାଗେ ନାହିଁ। ପରିଶ୍ରମ କରିବା, ଜୀବନଧାରଣ ନିମିତ୍ତ ରୋଜଗାର କରିବା, ଭୋଜନ କରିବା, ସନ୍ତାନ ଉତ୍ପାଦନ କରିବା , ପୋଷାକ ପରିଚ୍ଛଦରେ ଶରୀର ଆବୃତ ରଖିବା ଇତ୍ୟାଦି କର୍ମଗୁଡିକ ଆବଶ୍ୟକ। କିନ୍ତୁ ଜୀବନର ସମସ୍ତ ସମୟ ସେଥିରେ ବ୍ୟୟ କରିବା ଅର୍ଥ ମଣିଷର ଶକ୍ତି ଓ ସାମର୍ଥ୍ୟର ଅପଚୟ କରିବା। କାରଣ ମଣିଷର ଜୀବନ କ୍ଷଣସ୍ଥାୟୀ। ସେଥିରେ ପୁଣି ବାର୍ଦ୍ଧକ୍ୟ, ବିନାଶ ଓ ରୋଗ ଇତ୍ୟାଦି ଖୁବ୍‌ଶୀଘ୍ର ତାକୁ ଆକ୍ରମଣ କରୁଛନ୍ତି।

ଶରୀର ନିମିତ୍ତ ଶରୀର ଧାରଣ କରିବା ଆସୁରିକ ପ୍ରବୃତ୍ତି ଅଟେ। ରାକ୍ଷସରାଜ ବିରୋଚନ ଏହି ଭାବରେ ଜୀବନଧାରଣ କରୁଥିଲା। କାରଣ ବିରୋଚନ ଆତ୍ମଜ୍ଞାନ ଲାଭ କରିବା ନିମିତ୍ତ ବ୍ରହ୍ମାଙ୍କ ନିକଟକୁ ଯାଇ ମଧ୍ୟ ବୁଝିଥିଲା ଯେ ଏହି ଶରୀର ହିଁ ଆତ୍ମା ଓ ଶାଶ୍ୱତ। ତାକୁ ପୂଜା କରିବା ହିଁ ସର୍ବୋତ୍କୃଷ୍ଟ ପୂଜା। ତେଣୁ ଏଠାରେ ସେହି କ୍ଷୟଶୀଳ ଶରୀର ବିଷୟରେ ଗଭୀର ଚିନ୍ତାକରି ତାହାପ୍ରତି ମମତାଶୂନ୍ୟ ହେବା ନିମିତ୍ତ ଉପାୟ ବତାଇ ଦିଆଯାଇଛି। ଶରୀର ପ୍ରତି ମମତା ଦୂର ହୋଇଗଲେ ମଣିଷର ବୃଥା ଅହମିକା ମଧ୍ୟ ଦୂର ହୋଇଯିବ।

ପଶୁ ମଲାପରେ ତାହାର ଶରୀର କେତେକ କାମରେ ଲାଗିଥାଏ, କିନ୍ତୁ ମୃତ୍ୟୁପରେ ମଣିଷର ଶରୀର କୌଣସି କାମରେ ଲାଗେନାହିଁ। ଏହି ପ୍ରକାର ଏକ ଅଦରକାରୀ ଶରୀରର ରକ୍ଷଣାବେକ୍ଷଣ ଓ ଶୋଭା ପାଇଁ କେତେ ପରିଶ୍ରମ, କେତେ ଧନସମ୍ପତ୍ତି ରୋଜଗାର ଓ କେତେ ଅସଦାଚରଣ କରାଯାଉଛି ତାହାର ଇୟତା ନାହିଁ। ଯେଉଁ ଶରୀର ପାଇଁ ଏତେ ଯତ୍ନ, ଏତେ ଅର୍ଥ ଉପାର୍ଜନ, ଏତେ ଯୁଦ୍ଧ କରୁଛ, ତୁମର ସେହି ଶରୀରକୁ ମୃତ୍ୟୁପରେ ତୁମର ସ୍ତ୍ରୀ ମଧ୍ୟ ଛୁଇଁବା ପାଇଁ ଭୟ କରୁଛି।

ଏହିପରି ଭାବେ ଶରୀର ବିଷୟ ଚିନ୍ତାକଲେ ଆସ୍ତେ ଆସ୍ତେ ଶରୀର ପ୍ରତି ମୋହ କମିଯିବ ଏବଂ ଧୀରେ ଧୀରେ ଅନାସକ୍ତ ଭାବ ବୃଦ୍ଧି ପାଇବ। କିନ୍ତୁ ଶରୀର ମାଧ୍ୟମରେ ସମସ୍ତ ବିକାଶ ସାଧିତ ହେଉଥିବାରୁ ଶରୀରର ଯତ୍ନ ନେବାକୁ ପଡିବ। ବ୍ୟବହାର୍ଯ୍ୟ ବସ୍ତୁଗୁଡିକର ଯତ୍ନ ଆମେ ଯେପରି ଭାବେ ନେଉ ସେହିପରି ଭାବେ ଶରୀରର ଯତ୍ନ ନେବାକୁ ପଡିବ। କିନ୍ତୁ ସବୁବେଳେ ମନେ ରଖିବାକୁ ହେବ ଯେ, ଏହା ବିନାଶଶୀଳ। ସବୁବେଳେ ସବୁଦିନ ଆମକୁ ସୁଖ ଦେବନାହିଁ। ଦିନେ ନା ଦିନେ ଏହାର ବିନାଶ ଘଟିବ। ଏହି ଜ୍ଞାନରେ ଶରୀରର ଯତ୍ନନେଲେ ସୁସ୍ଥ ଜୀବନ ଯାପନ କରିହେବ ଓ ଦୁଃଖ କମିଯିବ।

**ବାଲସ୍ତାବତ୍କ୍ରୀଡ଼ାସକ୍ତଃ**

**ତରୁଣସ୍ତାବତ୍ତରୁଣୀସକ୍ତଃ।**

**ବୃଦ୍ଧସ୍ତାବତ୍ଚିନ୍ତାସକ୍ତଃ**

**ପରମେ ବ୍ରହ୍ମଣି କୋଽପି ନ ସକ୍ତଃ ॥୭॥**

**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

ବାଲଃତାବତ୍ = ଯେ ପର୍ଯ୍ୟନ୍ତ ଜଣେ ନିଜର ବାଳକ ଅବସ୍ଥାରେ ରହିଛି, କ୍ରୀଡ଼ା = (ସେ ପର୍ଯ୍ୟନ୍ତ) ଖେଳ ପ୍ରତି, ଆସକ୍ତଃ = ଆସକ୍ତ (ରହିବ), ତରୁଣଃ ତାବତ୍ = ଯୁବକ ( ଯେ ପର୍ଯ୍ୟନ୍ତ ଜଣେ ଯୌବନ ଅବସ୍ଥାରେ ରହିଛି), ତରୁଣୀ = ଯୁବତୀ (ଆବେଗ)ପ୍ରତି, ସକ୍ତଃ = ଆସକ୍ତ ରହିବ, ବୃଦ୍ଧଃ ତାବତ୍ = ଯେଉଁ ପର୍ଯ୍ୟନ୍ତ ଜଣେ ବାର୍ଦ୍ଧକ୍ୟ ଅବସ୍ଥାରେ ରହିଛି, ଚିନ୍ତା = ଚିନ୍ତା ପ୍ରତି, ଆସକ୍ତଃ = ଆସକ୍ତ ରହିବ, ପରମେ ବ୍ରହ୍ମଣି = ପରଂବ୍ରହ୍ମରେ, କଃ ଅପି = କେହି ମଧ୍ୟ, ନ = ନୁହେଁ, ସକ୍ତଃ = ଆସକ୍ତ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ।

*୭. ଶିଶୁ ଖେଳରେ, ଯୁବକଯୁବତୀ ପ୍ରେମରେ, ବୃଦ୍ଧ ସାଂସାରିକ ଚିନ୍ତାରେ ସର୍ବଦା ବ୍ୟସ୍ତ। କିନ୍ତୁ କେହି ପରମେଶ୍ୱରଙ୍କ ବିଷୟରେ ଚିନ୍ତା କରୁଥିବାର ଦେଖାଯାଏ ନାହିଁ।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ବାସ୍ତବରେ ଜୀବନ କ୍ଷଣସ୍ଥାୟୀ । ଜୀବନ ଯାତ୍ରାର ପଥ କିନ୍ତୁ ଅସରନ୍ତି । ସେଥିରେ ପୁଣି ନାନା ଝଡ଼ତୋଫାନ; ସେସବୁକୁ ଅତିକ୍ରମ କରି ଲକ୍ଷ୍ୟ ସ୍ଥଳରେ ପହଞ୍ଚିବାକୁ ପଡିବ । ସମସ୍ତ ବାଧାବିଘ୍ନ ସତ୍ତ୍ୱେ ମାନବର ବୁଦ୍ଧି ଏତେ ଶକ୍ତିଶାଳୀ ଯେ ତାର ସୁବିଧା ସୁଯୋଗ ନେଇ ପାରିଲେ ଅନତି ବିଳମ୍ବେ ସେ ଚରମ ଲକ୍ଷ୍ୟରେ ପହଞ୍ଚ ପାରନ୍ତା । କିନ୍ତୁ ହାୟ ହାୟ ! ସେ ତାହା କରିପାରୁ ନାହିଁ । ଜଗତରେ ଇନ୍ଦ୍ରିୟ ତୃପ୍ତିର ପ୍ରଲୋଭନରେ ସେ ଜଡ଼ିତ । ଇନ୍ଦ୍ରିୟାସକ୍ତିରେ ମୋହିତ ହୋଇ ସେ କାମିନୀ କାଞ୍ଚନ ପ୍ରତି ଅତିଶୟ ଆକୃଷ୍ଟ ହୋଇପଡୁଛି ।

ନିର୍ବୋଧ ମାନବ ରକ୍ତମାଂସର କ୍ଷୁଧାରେ ଜର୍ଜରିତ ହୋଇ ପଥହରା ହୁଏ । ଆଉ କଣ୍ଟକମୟ ବଣ ଜଙ୍ଗଲରେ ବୁଲି ବୁଲି ରକ୍ତାକ୍ତ ଓ କ୍ଲାନ୍ତଶ୍ରାନ୍ତ ହୋଇ ମରଣ ମୁଖରେ ପଡେ । ଆଚାର୍ଯ୍ୟ ଶଙ୍କର ସାଧାରଣ ମାନବର ଏହି ସର୍ବସାଧାରଣ ଭ୍ରମ ଦେଖି ଅତ୍ୟନ୍ତ ଦୁଃଖିତ ହୋଇ ଅମୃତମୟ ବାଣୀରେ ତାହାର ପ୍ରତିକାର ଉପାୟ ବତାଇଛନ୍ତି ।

ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ବିଭିନ୍ନ ଅବସ୍ଥାରେ ମନୁଷ୍ୟ କିପରି ବିଭିନ୍ନ ଭାବରେ ତାହାର ମୂଲ୍ୟବାନ ସମୟକୁ ବୃଥାରେ ନଷ୍ଟକରି ଚାଲିଛି, ତାହାର ଏକ ଜ୍ୱଳନ୍ତ ଉଦାହରଣ ଦିଆଯାଇଛି । ବାଲ୍ୟାବସ୍ଥାରେ ମଣିଷ କିପରି ଖେଳ ଓ ଖେଳନାରେ ତନ୍ମୟ ହୋଇ ରହୁଛି, ଯୌବନାବସ୍ଥାରେ ରକ୍ତମାଂସର କ୍ଷୁଧାରେ ଯୁବତୀ ପ୍ରତି ଆସକ୍ତ ହୋଇ ରହୁଛି । ବୟସ ବଢ଼ିବା ସଙ୍ଗେ ସଙ୍ଗେ ତା'ର ଦାନ୍ତ ପଡିଯାଏ, ବାଳ ପାଚିଯାଏ ଓ ବାଡ଼ିର ଆଶ୍ରୟ ନେଇ ଚଲାବୁଲା କରିଥାଏ ।

ସେତେବେଳେ ସେ ସବୁବେଳେ ଭୟ ଓ ଆଗ୍ରହର ଆତିଶଯ୍ୟରେ ଚିନ୍ତିତ ରହିଥାଏ । ଏହିପରି ଭାବେ ସାରାଜୀବନ କୌଣସି ଏକ ବିଷୟ ପ୍ରତି ଆସକ୍ତ ରହି ସେହିଥିରେ ମଜ୍ଜି ରହେ । କେତେବେଳେ ହେଲେ ଚିର ଶାନ୍ତିର ଆଧାର ସେହି ମଙ୍ଗଳମୟଙ୍କ କଥା ଚିନ୍ତା କରିବାକୁ ଟିକିଏ ହେଲେ ସମୟ ପାଏନାହିଁ ।

କ୍ରୀଡା, କାମ ଓ କ୍ରନ୍ଦନ ହିଁ ନିର୍ବୋଧ ମାନବର ଜୀବନ । ନିୟତି ବିରୁଦ୍ଧରେ ଗତି କରିବା କିମ୍ବା କାଳର ବିପରୀତ ମୁଖରେ ଚାଲିବା ସାଧାରଣ ମାନବ ପକ୍ଷରେ ବଡ଼ ଦୁରୂହ । ବାଲ୍ୟକାଳରେ କଣ୍ଢେଇ ଖେଳ, ଯୌବନରେ ଯୁବତୀ କୋଳ ଓ ବାର୍ଦ୍ଧକ୍ୟରେ ଚିନ୍ତାଗୋଳରେ ମାନବ ସର୍ବଦା ବ୍ୟସ୍ତ । ସମୟ କାହିଁ, ସେ ଚିନ୍ତା କରିବ ସେହି ସର୍ବଫଳଦାତା ସର୍ବନିୟନ୍ତାଙ୍କୁ ।

ତେଣୁ ଏହି ମୋହମାୟା ସଂସାରର ମମତାରୁ ଅତି ଚତୁରତାର ସହିତ ନିଜକୁ ସଂଯତ କରାଇ ଲକ୍ଷ୍ୟ ସ୍ଥଳକୁ ରାସ୍ତା କଢ଼ାଇନେବା ଏକାନ୍ତ ଆବଶ୍ୟକ । ଜୀବଜନ୍ତୁ,

ପଶୁପକ୍ଷୀ ସମସ୍ତେ ଏହି ମୋହମାୟାରେ ଜଡ଼ିତ। କିନ୍ତୁ ମନୁଷ୍ୟକୁ ସେଥିନିମିତ୍ତ କ୍ଷମା ଦିଆଯାଇପାରିବ ନାହିଁ। ମଣିଷ ବୁଦ୍ଧିମାନ, ବିଚାରବନ୍ତ। ଭଲମନ୍ଦ ବିଚାର କରିବାର ଶକ୍ତି ତାହାର ଅଛି। ଏହି ଶକ୍ତି ଯୋଗୁଁ ମଣିଷ ପ୍ରାଣୀ ସମାଜରେ ଶ୍ରେଷ୍ଠ। ଟିକିଏ ବିଚାର ବୁଦ୍ଧିର ସହିତ ଚେଷ୍ଟାକଲେ ସେ ପୂର୍ଣ୍ଣତା ଲାଭ କରିପାରିବ।

ଆଜି ଆମେ ଚାରିଆଡେ ଦେଖିବାକୁ ପାଉଛୁ ମଣିଷ ସର୍ବଦା କର୍ମଚଞ୍ଚଳ। କେତେବେଳେ ହେଲେ ଆଳସ୍ୟରେ ସେ ସମୟ କଟାଉନାହିଁ। କ୍ରୀଡ଼ାଙ୍ଗନ, ରଙ୍ଗମହଲ, ପାନଶାଳା, ସେବାସଦନ ଆଦି ବିଭିନ୍ନ କ୍ଷେତ୍ରରେ ନିଜର ଜୀବନକୁ କର୍ମମୁଖର କରି ରଖିବାରେ ସେ ସର୍ବଦା ବ୍ୟସ୍ତ। କେତେବେଳେ ହେଲେ ବିଶ୍ରାମ ନାହିଁ। ଭଗବାନଙ୍କ ବିଷୟରେ ଚିନ୍ତା କରିବାକୁ ସମୟ ନାହିଁ। କଠୋପନିଷଦରେ ଯଥାର୍ଥରେ କୁହାଯାଇଛି, "ମନୁଷ୍ୟର ଇନ୍ଦ୍ରିୟ ସକଳକୁ ସୃଷ୍ଟିକର୍ତ୍ତା ବହିର୍ମୁଖୀ ଭାବରେ ସୃଷ୍ଟି କରିଛନ୍ତି ଏବଂ ଏଥିଯୋଗୁଁ ସେ ଇନ୍ଦ୍ରିୟ ସ୍ତରରେ ରହେ ଓ କେବଳ ଇନ୍ଦ୍ରିୟ ଉପଭୋଗରେ ସନ୍ତୋଷ ଅନୁଭବ କରେ।" କଠକ ଋଷି କହନ୍ତି, "କେବଳ ଖୁବ୍ କ୍ୱଚିତ୍ ଜନ ଯିଏ ମହତ୍ତମକୁ ଉପଲବ୍ଧି କରିବାକୁ ଅଭିଳାଷ କରି ଇନ୍ଦ୍ରିୟ ନିବିଷ୍ଟତାରୁ ନିଜକୁ ପ୍ରତ୍ୟାହାର କରି ଅପରିବର୍ତ୍ତନୀୟ ଓ ଶାଶ୍ୱତଙ୍କ ଅନ୍ୱେଷଣ କରନ୍ତି।"

ପରମବ୍ରହ୍ମଙ୍କ ଠାରେ ଲୟ ରଖିବାକୁ ହେଲେ ସଂସାରର କାମନା ବାସନା ଓ କ୍ଷଣିକ ସୁଖରୁ ମନକୁ ଫେରାଇ ନେବାକୁ ପଡିବ। ଈଶ୍ୱରାଭିମୁଖୀ ହେବାକୁ ଇଚ୍ଛାକଲେ ତାଙ୍କ ପ୍ରତି ଅନୁରକ୍ତ ହେବାକୁ ପଡିବ ଏବଂ ଏହି ଅନୁରକ୍ତି ହିଁ ମନୁଷ୍ୟକୁ ସଂସାର ବିଷୟବାସନାର ଆସକ୍ତିରୁ ମୁକ୍ତି କରିବାରେ ସକ୍ଷମ ହେବ।

**କା ତେ କାନ୍ତା କସ୍ତେ ପୁତ୍ରଃ**

**ସଂସାରୋଽୟମତୀବ ବିଚିତ୍ରଃ ।**

**କସ୍ୟ ତ୍ୱଂ କଃ କୁତ ଆୟାତଃ**

**ତତ୍ତ୍ୱଂ ଚିନ୍ତୟ ତଦିହ ଭ୍ରାତଃ ॥୮॥**

**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

କା = କିଏ, ତେ= ତୁମର, କାନ୍ତା = ସ୍ତ୍ରୀ, କଃ = କିଏ, ତେ = ତୁମର, ପୁତ୍ରଃ = ପୁଅ, ସଂସାରଃ ଅୟଂ = ଏହି ସଂସାର, ଅତୀବ = ଅତ୍ୟନ୍ତ, ବିଚିତ୍ରଃ = ପ୍ରକୃତରେ ଆଶ୍ଚର୍ଯ୍ୟଜନକ, କସ୍ୟ = କାହାର, ତ୍ୱମ୍ = ତୁମେ, କଃ = (ତୁମେ) କିଏ, କୁତ = କେଉଁଠାରୁ, ଆୟାତଃ = ଆସିଅଛ, ତତ୍ତ୍ୱଂ = ସେହି (ତତ୍ତ୍ୱକଥା ଅର୍ଥାତ୍ ସାରକଥା), ଚିନ୍ତୟ = ଚିନ୍ତାକର, ତଦ୍ ଇହ = ତାହା ଏହିଠାରେ, ଭ୍ରାତଃ = ହେ ଭାଇ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ ।

*୮. କିଏ ତୁମର ସ୍ତ୍ରୀ? କିଏ ତୁମର ପୁତ୍ର? ବାସ୍ତବିକ ଏ ସଂସାର ଅତି ଆଶ୍ଚର୍ଯ୍ୟ । ତୁମେ କାହାର ? କେଉଁଠାରୁ ଆସିଅଛ ? ହେ ଭାଇ, ତାହା ତୁମେ ଏହିକ୍ଷଣି ଏହିଠାରେ ଚିନ୍ତାକର ।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ପାରିବାରିକ ଅନୁଷ୍ଠାନରେ ଥିବା ସ୍ନେହ ମମତାର ବନ୍ଧନ ବ୍ୟକ୍ତିବିଶେଷ ଉପରେ ଯେ ପ୍ରଭୂତ ପ୍ରଭାବ ବିସ୍ତାର କରେ ତାହା ଅସ୍ୱୀକାର କରାଯାଇ ନ ପାରେ । ସେହି ପ୍ରଭାବ ବ୍ୟକ୍ତିବିଶେଷର ଅହମିକା ଜନିତ ସ୍ୱାର୍ଥପରତାକୁ ବହୁ ଅଂଶରେ ଦୂର କରିଥାଏ । କିନ୍ତୁ ସେହି ସଂପର୍କ ଜନିତ ପ୍ରଭାବର ମଧ୍ୟ ଏକ ସୀମା ଅଛି । ପୁରୁଷ ଓ ନାରୀ ପରସ୍ପର ପରସ୍ପରକୁ ସ୍ନେହ, ମମତା ଓ ସମ୍ମାନ ଦେଇ ପବିତ୍ର ଦାମ୍ପତ୍ୟ ଜୀବନଯାପନ କରନ୍ତି ଏବଂ ଯଥା ସମୟରେ ପିତା-ମାତାର ସ୍ଥାନ ଲାଭକରି ଥାଆନ୍ତି । ପ୍ରତ୍ୟେକଙ୍କର ପ୍ରତ୍ୟେକଙ୍କ ଠାରୁ ଶିଖିବାର ଯଥେଷ୍ଟ କିଛି ଥାଏ ।

ସେମାନେ ଯଦି ପ୍ରକୃତରେ ଏକଭାବାପନ୍ନ ହୋଇ ବାସ କରନ୍ତି, ପରସ୍ପରର ସାହଚର୍ଯ୍ୟରୁ ସେମାନେ ବହୁତ କିଛି ଶିଖିଥାନ୍ତି । କିନ୍ତୁ ସାଧାରଣତଃ, ନିଜର ଭ୍ରମଯୋଗୁଁ ପରସ୍ପର ପରସ୍ପର ପ୍ରତି ଏତେ ଆସକ୍ତ ହୋଇଉଠନ୍ତି ଯେ ପରିଣାମରେ ସୁଖମୟ ଦାମ୍ପତ୍ୟ ଜୀବନ ଦୁଃଖମୟ ହୋଇ ଉଠେ । ହିନ୍ଦୁ ଶାସ୍ତ୍ରାନୁଯାୟୀ ସ୍ତ୍ରୀ ପୁରୁଷ ବିବାହ ବନ୍ଧନ ପରେ ଏକ ମନ ଏକ ପ୍ରାଣରେ ବାସ କରିବା ଉଚିତ । କିନ୍ତୁ ଆଚାର୍ଯ୍ୟ ଶଙ୍କରଙ୍କ ମତରେ ସ୍ତ୍ରୀ

ପୁରୁଷ ଦାମ୍ପତ୍ୟ ବନ୍ଧନର ନିବିଡତା ମଧ୍ୟରେ ଟିକିଏ ଫାଙ୍କ ରହିବା ଦରକାର। ସେହି ଫାଙ୍କଟି ହେଉଛି ରକ୍ତମାଂସର ଆସକ୍ତି ବେଶି ନ ରହୁ।

ପରିବାର ଏକ ପରୀକ୍ଷା କ୍ଷେତ୍ର। ସେହି ପରୀକ୍ଷା କ୍ଷେତ୍ରରେ ବ୍ୟକ୍ତିବିଶେଷ ନିଜର ବ୍ୟକ୍ତିତ୍ୱ ବଢ଼ାଇବା ପାଇଁ ସୁବିଧା ପାଇଥାଏ। କିନ୍ତୁ ପରିବାର ବ୍ୟକ୍ତିବିଶେଷର ଜୀବନର ଶେଷ ଲକ୍ଷ୍ୟସ୍ଥଳ ନୁହେଁ। ପରିବାର ଜୀବନର ଏକ ଶିକ୍ଷାସ୍ଥଳ। କିନ୍ତୁ ଜୀବନର ଉନ୍ନତି ନିମିତ୍ତ ପରିବାରକୁ ଶୀର୍ଷସ୍ଥାନ ବୋଲି ଭୁଲ୍‌ରେ ସୁଦ୍ଧା ଗ୍ରହଣ କରନାହିଁ।

ଦାର୍ଶନିକ ଗୂଢ଼ତତ୍ତ୍ୱଗୁଡିକ ଯଦି କାର୍ଯ୍ୟକ୍ଷେତ୍ରରେ କାର୍ଯ୍ୟକାରୀ ହୋଇ ନ ପାରେ, ତେବେ ଦର୍ଶନ କେବଳ ଏକ ଶୁଷ୍କ ଆଦର୍ଶ ଚିନ୍ତାଧାରାରେ ରହିଯିବ। ଜୀବନର ଶିକ୍ଷା କୌଣସି ପ୍ରକାରରେ ସଭ୍ୟତାକୁ ପ୍ରଭାବିତ କରିପାରିବ ନାହିଁ। ମମତା ବନ୍ଧନରେ ବାନ୍ଧିହୋଇ ପାରିବାରିକ ଜୀବନଯାପନ କରିବା ସ୍ତ୍ରୀ ଓ ପୁରୁଷଙ୍କର ସ୍ୱଭାବ। ହଂସ ଜଳ ଦେଖିଲେ ଆଗ୍ରହରେ ଯେପରି ଜଳ ଭିତରକୁ ଡ଼େଇଁପଡେ, ମନ ଠିକ୍ ସେହିପରି ଏହି ପ୍ରକାର ବନ୍ଧନ ଭିତରକୁ ଡ଼େଇଁପଡେ।

ତେଣୁ ଦର୍ଶନ ଏପରି ଏକ କୌଶଳ ବା ଉପାୟ ବତାଇବା ଆବଶ୍ୟକ, ଯେଉଁ ଉପାୟ ସାହାଯ୍ୟରେ ଧୀରେ ଧୀରେ ମାନବ ମମତାଶୂନ୍ୟ ଭାବେ ନିଜକୁ ଗଢ଼ିନେଇ ପାରିବ। ଏହି ପ୍ରକାର ଉପାୟ ଏହି ଶ୍ଲୋକରେ କୁହାଯାଇଛି।

ଗଭୀର ଅନୁସନ୍ଧାନ, ଭ୍ରମର ଏକମାତ୍ର ମହୌଷଧି। ସେହି ଗଭୀର ଅନୁସନ୍ଧାନ କିପରି କରିବାକୁ ହେବ, ତାହାରି ଉପାୟ ଏଠାରେ ବତାଇ ଦିଆଯାଇଛି। ନିଜେ ନିଜକୁ ପ୍ରଶ୍ନକରି ତାତ୍ପର୍ଯ୍ୟ ବୁଝିବା ପାଇଁ ଆଚାର୍ଯ୍ୟ ଶଙ୍କର କେତେଗୁଡିଏ ଉପାୟ ବତାଇଛନ୍ତି। କିଏ ତୁମର ପୁତ୍ର? କିଏ ତୁମର ସ୍ତ୍ରୀ? ଅନୁସନ୍ଧାନ ଓ ବିଶ୍ଲେଷଣ ଫଳରେ ଆମେ ଦେଖିବାକୁ ପାଉଛେ ଯେ ଯାହାକୁ ଆମେ ଆମର ପ୍ରିୟତମା ସ୍ତ୍ରୀ ବୋଲି କହୁ, ବିବାହ ବନ୍ଧନରେ ଆମ୍ ସଙ୍ଗରେ ଜଡ଼ିତ ହେବା ପୂର୍ବରୁ ସେ ପିତାଙ୍କ କନ୍ୟା ଥିଲା। ତାହାପରେ ଜୀବନ ଯେପରି ଅନିଶ୍ଚିତ, ସେଥିରେ କିଏ ଆଗ ମରିବ କେହି କହିପାରିବେ ନାହିଁ। ସେ କ୍ଷେତ୍ରରେ ସ୍ୱାମୀ ଯଦି ଆଗ ମରିଯାଆନ୍ତି, ସ୍ତ୍ରୀ ବିଧବା ହୋଇ ଜୀବନ କଟାଇବ। ସୁତରାଂ ଜୀବନରେ ପୁରୁଷ ଓ ସ୍ତ୍ରୀ ପୃଥକ ଭାବରେ ଜନ୍ମ ନେବେ, ମରିବେ ମଧ୍ୟ ପୃଥକ ଭାବେ। ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ଜୀବନର ଯାତ୍ରା ପଥରେ ସ୍ତ୍ରୀ-ପୁରୁଷର ମିଳନ ହୁଏ, କିଛି ସମୟ ପରସ୍ପର ଖୁସି ଗପରେ ସମୟ କଟାନ୍ତି, ଗୋଟିଏ ନିର୍ଦ୍ଦିଷ୍ଟ ଷ୍ଟେସନ୍ ପହଞ୍ଚିଲା

ପରେ ସମସ୍ତେ ଅଲଗା ହୋଇ ଚାଲିଯାଆନ୍ତି। ଏହିସବୁ ଜାଣି ବା ବିଶ୍ଳେଷଣ କରି ସଂସାରରେ କିପରି ସମ୍ପର୍କ ରଖିବାକୁ ହେବ, ତାହା ବୁଝିବାକୁ ହେବ।

ସ୍ତ୍ରୀ ସହିତ ସମ୍ପର୍କ ପରି, ପୁଅ ସହିତ ସମ୍ପର୍କ ମଧ୍ୟ ବିଚାର କରିବା। ସେ ଜନ୍ମହେବା ପରେ ଆମେ ତାକୁ ଆମର ପୁଅ ବୋଲି କହୁ। ଜନ୍ମ ପୂର୍ବରୁ ସେ ଭୃଣ ଆକାରରେ ଥିଲା। ଭୃଣ ପୂର୍ବରୁ ତାହା ଶୁକ୍ର ଆକାରରେ ଥିଲା। ପିତା ଖାଇଥିବା ଖାଦ୍ୟ ହଜମ ହୋଇ ଶୁକ୍ରରେ ପରିଣତ ହୋଇଛି। ଖାଦ୍ୟ ପୁଣି ମାଟିରୁ ଉତ୍ପନ୍ନ ବା ସଂଗ୍ରହ କରାଯାଇଛି। ମୋଟ ଉପରେ ଧୂଳି ମୁଠାଏ ବା ମାଟି ମେଞ୍ଚାଏ ବିଭିନ୍ନ ରୂପ ପରିବର୍ତ୍ତନ କରି ଫଳ, ଖାଦ୍ୟ, ବୀର୍ଯ୍ୟ, ଭୃଣ ଓ ସନ୍ତାନ ଆକାରରେ ପ୍ରକାଶିତ ହୋଇଛି। ତେଣୁ ସନ୍ତାନଟି କେବଳ ମାଟି ମେଞ୍ଚାଏ ବ୍ୟତୀତ କିଛି ନୁହେଁ।

ତେଣୁ ମମତାର ବନ୍ଧନ, ଅର୍ଥ ମେଞ୍ଚାଏ ମାଟିର ଅନ୍ୟ ମାଟିମେଞ୍ଚା ସହିତ ବନ୍ଧନ। କି ଆଶ୍ଚର୍ଯ୍ୟ! ମାୟାର କି ଅଦ୍ଭୁତ ଶକ୍ତି!

ଚିନ୍ତାଶୂନ୍ୟ ମଣିଷ ପାଇଁ ବ୍ୟାବହାରିକ ଜୀବନ ବା ସଂସାର ଖୁବ୍ ଆକର୍ଷଣୀୟ ଏବଂ ବନ୍ଧନର କାରଣ କିନ୍ତୁ ଜଣେ ବିଚାରବାନ୍ ବିବେକୀ ପାଇଁ ନୁହେଁ। ତେଣୁ ଗଭୀର ଚିନ୍ତାର ସହ ଅନୁସନ୍ଧାନ କର। ମୁଁ କାହାର? କିପରି ଭାବେ ଏ ସଂସାରରେ ରହିଛି? ଆମେ କିପରି ଆସି ଜଗତ ରୂପକ ରଙ୍ଗମଞ୍ଚରେ ନିଜ ନିଜର ଖେଳ ଦେଖାଉଛୁ? ଆମେ କେଉଁଠାକୁ ଆସିଛୁ? ଥରେ ସ୍ଥାନାନ୍ତରିତହେବା ପରେ ପୁଣି କେଉଁଠାକୁ ଯାଉଛୁ? ଯଦିବା ଆମେ ଆସିବା ଓ ଯିବାର ଏକ ନିର୍ଦ୍ଦିଷ୍ଟ ସ୍ଥାନ ଥାଏ ତାହାହେଲେ ବର୍ତ୍ତମାନ ଏହିଠାରେ ଆମର କର୍ତ୍ତବ୍ୟ କ'ଣ? ଆମର ବଞ୍ଚିବା ସମୟ ଭିତରେ ଆମେ ଯେଉଁ ଅସଂଖ୍ୟ ଘଟଣା ବା ବିଷୟବସ୍ତୁର ସମ୍ମୁଖୀନ ହେଉଛେ, ସେମାନଙ୍କ ପ୍ରତି ଆମ ବ୍ୟବହାର କିପରି ହେବା ଉଚିତ?

ହେ ଭାଇ! ଏହିସବୁ ବିଷୟରେ ଚିନ୍ତାକର। ଏଠାରେ ଶଙ୍କର କହୁଛନ୍ତି, "ହେ ଭ୍ରାତ!" ଅର୍ଥାତ୍ ଭାଇ। ଗୁରୁଭାବେ ଉପଦେଶ ନ ଦେଇ ବଡ଼ଭାଇ ପଥହରା ସାନଭାଇକୁ ଆଦରରେ ଉପଦେଶ ଦେବାଭଳି ଉପଦେଶ ଦେଉଛନ୍ତି, ପୁଣି ସେହି ଭ୍ରାତକୁ ମଧ୍ୟ ଭ୍ରାନ୍ତ ବୋଲି ବ୍ୟାଖ୍ୟା କରାଯାଇପାରେ('ଭ୍ରାତ'ର ପାଠାନ୍ତରରେ 'ଭ୍ରାଂତ' ମଧ୍ୟ ଦୃଷ୍ଟିଗୋଚର ହୁଏ)। କାରଣ ଭ୍ରାନ୍ତ ମାନବ ଉପଯୁକ୍ତ ବିଚାର ନ କରି ଭ୍ରମରେ ବାହାର ବସ୍ତୁ ସକଳରେ ଅତ୍ୟଧିକ ମମତା ରଖି ଘାଣ୍ଟିହୁଏ। ଚିନ୍ତା କରିବାର ଶକ୍ତି ହରାଇ ବସିଥାଏ।

**ସତ୍‌ସଙ୍ଗତ୍ୱେ ନିଃସଙ୍ଗତ୍ୱଂ**
**ନିଃସଙ୍ଗତ୍ୱେ ନିର୍ମୋହତ୍ୱମ୍‌।**
**ନିର୍ମୋହତ୍ୱେ ନିଶ୍ଚଲତତ୍ତ୍ୱଂ**
**ନିଶ୍ଚଲତତ୍ତ୍ୱେ ଜୀବନ୍ମୁକ୍ତିଃ ॥୯॥**

**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

ସତ୍‌ସଙ୍ଗତ୍ୱେ = ମହତ ଲୋକଙ୍କର ସଂସର୍ଗରେ ଆସିଲେ, ନିଃସଙ୍ଗତ୍ୱଂ = ବିଷୟବସ୍ତୁ ପ୍ରତି ଆସକ୍ତି ଦୂରହୁଏ, ନିଃସଙ୍ଗତ୍ୱେ = ଆସକ୍ତି ଶୂନ୍ୟତାରୁ, ନିର୍ମୋହତ୍ୱଂ = ମାୟାରୁ ମୁକ୍ତି ମିଳେ, ନିର୍ମୋହତ୍ୱେ = ମାୟାରୁ ମୁକ୍ତି ମିଳିଲେ, ନିଶ୍ଚଳ = ଅପରିବର୍ତ୍ତନୀୟ, ତତ୍ତ୍ୱଂ = ସତ୍ୟ (ଆତ୍ମତତ୍ତ୍ୱ) ଅନୁଭୂତ ହୁଏ, ନିଶ୍ଚଲତତ୍ତ୍ୱେ = ସତ୍ୟ (ଆତ୍ମତତ୍ତ୍ୱ) ଅନୁଭୂତିରୁ, ଜୀବନ ମୁକ୍ତିଃ = ଜୀବନ କାଳରେ ମୁକ୍ତିଲାଭ ହୁଏ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ।

*୯. ସତ୍‌ସଙ୍ଗର ସଂସର୍ଗରେ ଆସିଲେ ବିଷୟବସ୍ତୁ ପ୍ରତି ଅନାସକ୍ତ ଭାବ ଆସେ। ଅନାସକ୍ତ ଭାବଯୋଗୁଁ ମୋହ ଦୂରହୁଏ। ମୋହ ଦୂରହେଲେ ଚିରନ୍ତନ ସତ୍ୟ (ଆତ୍ମତତ୍ତ୍ୱ) ଅନୁଭୂତ ହୁଏ। ଏହି ସତ୍ୟ ଅନୁଭୂତି ପରେ ଜୀବନ୍ମୁକ୍ତ ଅବସ୍ଥା ଆସେ, ଅର୍ଥାତ୍‌ ବଞ୍ଚି ଥାଉଁ ଥାଉଁ ଜୀବ ମୁକ୍ତିଲାଭ କରେ।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ଆଦ୍ୟରୁ ଏ ପର୍ଯ୍ୟନ୍ତ ଯାହାସବୁ ବିଚାର କରାଗଲା, ସେଥିରୁ ପରିଷ୍କାର ଭାବରେ ଜଣାଗଲା ଯେ, କେବଳ ଧନ ରୋଜଗାର ଓ ସଞ୍ଚୟ କରି ଜଗତରେ ବଂଚି ରହିବାରେ କିଛି ବିଶେଷତ୍ୱ ନ ଥାଏ। ମମତା ବନ୍ଧନରେ ବାନ୍ଧିହୋଇ ବଂଚିରହିବା ଯାହା, ବିଷରୁ ପେଟେ ଖାଇ ରହିବା ତାହା। ରକ୍ତମାଂସର କ୍ଷୁଧାକୁ ତୃପ୍ତ କରିବାକୁ ଯାଇ ଆମେ ଆମର ମହତଗୁଣ ଗୁଡିକୁ ନଷ୍ଟ କରି ଦେଉଛୁ। ତେଣୁ କେବଳ ମାତ୍ର ପ୍ରତିପକ୍ଷ ଭାବନା ଦ୍ୱାରା; ଅର୍ଥାତ୍‌ ଏହି ରକ୍ତମାଂସର କ୍ଷୁଧାର ତୃପ୍ତିରେ ଶାନ୍ତି ନଷ୍ଟ ହେଉଛି, ଜୀବନ ଦୁଃଖମୟ ହେଉଛି ଇତ୍ୟାଦି ଚିନ୍ତାକରି ଏବଂ ସେହି ପରମ ପୂଜନୀୟ ଗୋବିନ୍ଦଙ୍କୁ ସ୍ମରଣ କରି ରକ୍ତମାଂସ କ୍ଷୁଧାର ଦାଉରୁ ନିଜକୁ ଦୂରେଇ ରଖିବାକୁ ଚେଷ୍ଟା କରିବା ଉଚିତ୍‌।

କଥାଟି ବେଶ ଯୁକ୍ତିଯୁକ୍ତ ଓ ମନୋମୁଗ୍ଧକର। କିନ୍ତୁ ନିର୍ଦ୍ଧାରିତ ପନ୍ଥାରେ ଗତିକରିବା ଏତେ ସହଜ ନୁହେଁ। ଦର୍ଶନର ନୀତି ନିୟମରେ ଚଳିବା ହଠାତ୍‌ ଅସମ୍ଭବ ହୋଇପଡେ। ସବୁ ଯୁଗରେ ସବୁ କ୍ଷେତ୍ରରେ ସାଧକଗଣ ଏହି ପ୍ରକାର ଅସୁବିଧାର ସମ୍ମୁଖୀନ ହୁଅନ୍ତି।

ତେଣୁ ଦାର୍ଶନିକଗଣ ଏହିସବୁ ସମସ୍ୟାକୁ ଉପଲବ୍ଧି କରି ନାନା ଉପାୟ ଉଦ୍ଭାବନ କରିବା ଉଚିତ, ଯେପରି କି ସେହି ଉପାୟ ଅବଲମ୍ବନରେ ନୂତନ ସାଧକ ସବୁ ବାଧାବିଘ୍ନ ଏଡ଼ାଇ ନିଜର ରାସ୍ତାରେ ଚାଲିପାରିବ। ତାହା ନ ହେଲେ, ଏ ପ୍ରକାର ଦର୍ଶନ ସବୁ କେବଳ କଳ୍ପନା ବିଳାସରେ ପର୍ଯ୍ୟବସିତ ହେବ।

ଆଚାର୍ଯ୍ୟ ଶଙ୍କର ନିଜର ଶିଷ୍ୟମାନଙ୍କୁ ସବୁବେଳେ ସିଧାସଳଖ ଭାବରେ ଉପଦେଶ ଦେଇଛନ୍ତି। ପୂର୍ବକାଳରେ ଋଷିଗଣ ପଦ୍ମାସନରେ ବସି ନୟନ ମୁଦ୍ରିତ କରି ଗୁରୁଗମ୍ଭୀର ସ୍ୱରରେ ନିଜର ଅଲୌକିକ ଜ୍ଞାନ ଉପଲବ୍ଧିକୁ ପ୍ରକାଶ କରିଥାନ୍ତି, କିନ୍ତୁ ସେଥିରେ ସର୍ବସାଧାରଣ ଉପକୃତ ହୋଇପାରନ୍ତି ନାହିଁ। କିନ୍ତୁ ଆଚାର୍ଯ୍ୟ ଶଙ୍କର ଜଣେ ଦକ୍ଷ ଧର୍ମପ୍ରଚାରକ। ତାଙ୍କର ଶିଷ୍ୟ ବା ଶ୍ରୋତାବର୍ଗଙ୍କର ଜ୍ଞାନର ସୀମା କେତେଦୂର, ତାହା ଭଲ ଭାବରେ ଜାଣି ସେହି ଅନୁଯାୟୀ ସେ ଉପଦେଶ ଦେଇଛନ୍ତି।

ଏହି ଶ୍ଳୋକରେ ଶଙ୍କର ସେହି କୌଶଳ ଅବଲମ୍ବନ କରିଛନ୍ତି। ସାଧକ ସହଜରେ ସେହି ଉପଦେଶ ଅନୁସରଣ କରି ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରିବେ। ଦର୍ଶନର ଗଭୀର ତତ୍ତ୍ୱ ଅନୁଭବ କଲେ ମଧ୍ୟ ଆମେ ପ୍ରତି ମୁହୂର୍ତ୍ତରେ ପାର୍ଥିବ ସୁଖର ଆକର୍ଷଣକାରୀ କାମିନୀ କାଞ୍ଚନ ଆବର୍ତ୍ତରେ ଘୂରି ଘୂରି ବୁଲୁଛୁ।

ସମୟ ସମୟରେ ବିଚାର କରି ନିଜକୁ ସଂଯତ କରିନେଲେ ମଧ୍ୟ ଇନ୍ଦ୍ରିୟ ସୁଖଭୋଗ ପାଇଁ କାମିନୀ କାଞ୍ଚନର ଆକର୍ଷଣ ଏତେ ପ୍ରବଳ ଯେ ସେମାନଙ୍କ ବିରୁଦ୍ଧରେ ତିଷ୍ଠିବା ଅତୀବ ଦୁଃସାଧ୍ୟ ହୋଇଉଠେ।

ତେଣୁ ପିଲାଦିନରୁ ସେହି ଶକ୍ତିଶାଳୀ ଶତ୍ରୁ ବିରୁଦ୍ଧରେ ଯୁଦ୍ଧ କରିବା ନିମିତ୍ତ ଏକ ସୁନ୍ଦର ଉପାୟ ସେ ବତାଇ ଦେଇଛନ୍ତି। ତାହା ହେଉଛି ସତ୍‌ସଙ୍ଗ। ସତ୍‌ସଙ୍ଗରେ ରହିବା ଫଳରେ ସାଧକର ମନ ସବୁବେଳେ ମହତ୍ ଦିଗରେ ଗତି କରୁଥାଏ। ମନ୍ଦ ଭାବନାଗୁଡିକ ସହଜରେ ଆସିପାରନ୍ତି ନାହିଁ। ସଂସାରର ମୋହପୂର୍ଣ୍ଣ ଆକର୍ଷଣରୁ ରକ୍ଷା ପାଇବା ପାଇଁ ସତ୍‌ସଙ୍ଗ ହିଁ ଏକମାତ୍ର ରକ୍ଷାକବଚ।

ଜୀବନ ଯାତ୍ରାରେ 'ସାଥି'ର ସ୍ଥାନ ଅତି ଉଚ୍ଚରେ। ସଂସାରୀ ବିଚାରହୀନ ଭାବରେ ସାଙ୍ଗସାଥି ବାଛି ନେଇଥାଏ। ଫଳରେ ଯେତେ ବିଚାରବନ୍ତ ହେଲେ ମଧ୍ୟ କୁସଙ୍ଗ ପ୍ରଭାବରେ ସମସ୍ତ ବିଚାର ବୁଦ୍ଧି ହରାଇ ବସେ। ଯେଉଁମାନେ ଈଶ୍ୱର ପରାୟଣ ଓ ସବୁବେଳେ ଈଶ୍ୱରାଭିମୁଖୀ, ତାହାଙ୍କୁ ମହତ୍ ଲୋକ କୁହାଯାଏ। ଏହି ପ୍ରକାର ଲୋକମାନଙ୍କ ସଂସର୍ଗରେ ଆସିଲେ ମନ ସବୁବେଳେ ମହତ୍ ଦିଗରେ ଗତିକରେ। ଫଳରେ ମନ୍ଦ

ଭାବନାଗୁଡିକ ଆପେ ଆପେ ଦୂରେଇ ଯାଇଥାଏ। ତେଣୁ ସତ୍‌ସଙ୍ଗ ଆସକ୍ତି ଓ ମମତା ରୂପକ ଶତ୍ରୁମାନଙ୍କ କବଳରୁ ରକ୍ଷା ପାଇବାର ଏକ ସୁଦୃଢ଼ ଦୁର୍ଗ ଅଟେ।

ସତ୍‌ସଙ୍ଗରେ ଜୀବନ କଟାଇବା ଫଳରେ ବିଷୟବାସନା ପ୍ରତି ଆସକ୍ତି କମିଯାଏ। ଅର୍ଥାତ୍ ବିଷୟବାସନା ପ୍ରତି ନିଃସଙ୍ଗ ଭାବ ଧୀରେ ଧୀରେ ଆସେ। ନିଃସଙ୍ଗ ଭାବର ଅଭ୍ୟାସ ବଢ଼ିବା ସଙ୍ଗେ ସଙ୍ଗେ ସଂସାରର ବିଷୟବସ୍ତୁ ଉପରେ ଥିବା ମୋହ ବା ମମତା ଦୂର ହୋଇଯାଏ। ପ୍ରଥମେ ମନ ସାଂସାରିକ ବିଷୟବସ୍ତୁ ଉପରେ ଗୁରୁତ୍ୱ ଦିଏ ଏବଂ ପରିଣାମରେ ସେହି ସକଳ ବିଷୟବସ୍ତୁ ମନକୁ ମନ୍ତ୍ରମୁଗ୍ଧ କରି ନିଜ ଆୟତ୍ତରେ ରଖେ। ସୁତରାଂ ବିଷୟବସ୍ତୁ ଉପରେ ଗୁରୁତ୍ୱ ନ ଦେଲେ ତାହା ମନକୁ ଆଉ ଆୟତ୍ତ କରି ରଖିବାର ପ୍ରଶ୍ନ ଉଠିବ ନାହିଁ।

ମନ ସବୁବେଳେ ବାସନା ଦ୍ୱାରା ଢ଼ାଙ୍କି ହୋଇ ନିଜର ସ୍ୱରୂପକୁ ଭୁଲି ଯାଇଥାଏ। କିନ୍ତୁ ଯେତେବେଳେ ସେ ବିଷୟବସ୍ତୁର ପ୍ରକୃତ ସ୍ୱରୂପକୁ ବୁଝିପାରେ, ଅର୍ଥାତ୍ ବିଷୟବସ୍ତୁର ମହତ୍ତ୍ୱ କେବଳ ବାସନା ଦ୍ୱାରା ନିର୍ଦ୍ଧାରିତ ହେଉଛି ବୋଲି ବୁଝିପାରେ, ସେତେବେଳେ ବିଷୟବସ୍ତୁର ଗୁରୁତ୍ୱ ନଷ୍ଟ ହୋଇଯାଏ; ଅର୍ଥାତ୍ ମନରୁ ବାସନା ଦୂର ହୋଇଯାଏ। ଏହି ଭାବ ସାଧକର ଯେତେ ବେଶୀ ଅନୁଭୂତ ହେଉଥାଏ, ସେ ସେତେ ସ୍ୱ-ସ୍ୱଭାବକୁ ଅନୁଭବ କରେ। ଫଳରେ ସେ ଜୀବନରେ ବିଷୟବାସନାରୁ ମୁକ୍ତିଲାଭ କରେ ବା ଜୀବନ୍ମୁକ୍ତ ହୁଏ।

ଏହି ବିଶ୍ଲେଷଣ ବେଳେ ଜୀବନରେ କିପରି ପତନ ଘଟେ, ଗୀତାରେ ବର୍ଣ୍ଣିତ ସେହି ସମ୍ବନ୍ଧୀୟ ଶ୍ଳୋକଗୁଡିକ ମନେପଡେ। ଯଥା–

ଧ୍ୟାୟତୋ ବିଷୟାନ୍‌ପୁଂସଃ ସଙ୍ଗସ୍ତେଷୂପଜାୟତେ।
ସଙ୍ଗାତ୍ ସଂଜାୟତେ କାମଃ କାମାତ୍‌କ୍ରୋଧୋଽଭିଜାୟତେ ॥ (୨:୬୨)

କ୍ରୋଧାତ୍‌ଭବତି ସମ୍ମୋହଃ ସମ୍ମୋହାତ୍‌ସ୍ମୃତିବିଭ୍ରମଃ।
ସ୍ମୃତିଭ୍ରଂଶାତ୍ ବୁଦ୍ଧିନାଶୋ ବୁଦ୍ଧିନାଶାତ୍‌ପ୍ରଣଶ୍ୟତି ॥ (୨: ୬୩)

ଗୀତୋକ୍ତ ଉପର ଲିଖିତ ଶ୍ଳୋକ ଦୁଇଟି ପତନର ସୋପାନ ବର୍ଣ୍ଣନା କରୁଥିବା ବେଳେ ଶଙ୍କର ଉତ୍‌ଥାନର ସୋପାନ ଦେଖାଇଛନ୍ତି।

ଶ୍ଳୋକରେ ଥିବା "ନିଶ୍ଚଳତତ୍ତ୍ୱଂ" ଶବ୍ଦକୁ କେହି କେହି "ନଶ୍ଚଳିତଦ୍ୱମ୍' ପଢ଼ିଥାଆନ୍ତି। ସେ ସ୍ଥଳରେ ନିମ୍ନ ପ୍ରକାରେ ବିଶ୍ଲେଷଣ କରାଯାଇଥାଏ। ମନ ମୋହମୁକ୍ତ

ହେଲେ ଧ୍ୟାନାବସ୍ଥାରେ ସ୍ଥିରତା ଲାଭକରେ ଏବଂ ଧ୍ୟାନର ଏହି ସ୍ଥିରାବସ୍ଥା ସଙ୍ଗେ ସଙ୍ଗେ ଈଶ୍ୱରାନୁଭୂତି ଏବଂ ଜୀବନ୍ମୁକ୍ତ ଅବସ୍ଥା ଅନାୟାସରେ ଲାଭ କରାଯାଇଥାଏ।

**ବୟସି ଗତେ କଃ କାମବିକାରଃ**

**ଶୁଷ୍କେ ନୀରେ କଃ କାସାରଃ।**

**କ୍ଷୀଣେ ବିତ୍ତେ କଃ ପରିବାରୋ**

**ଜ୍ଞାତେ ତତ୍ତ୍ୱେ କଃ ସଂସାରଃ ॥୧୦॥**

**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

ବୟସିଗତେ = ବୟସ (ଯୌବନ) ଚାଲିଗଲା ପରେ, କଃ = କେଉଁଠାରେ, କାମବିକାରଃ = ରକ୍ତମାଂସର କ୍ଷୁଧା ଓ ତାହାର ଖେଳ, ଶୁଷ୍କେ ନୀରେ = ଜଳ ଶୁଖିଗଲେ, କଃ = କେଉଁଠାରେ, କାସାରଃ = ଜଳାଶୟ, କ୍ଷୀଣେ ବିତ୍ତେ = ସମ୍ପତ୍ତି କ୍ଷୀଣ ହୋଇଗଲେ, କଃ = କେଉଁଠାରେ, ପରିବାରଃ = କୁଟୁମ୍ବ ପରିଜନ, ଜ୍ଞାତେ ତତ୍ତ୍ୱେ = ସତ୍ୟର ଅନୁଭୂତି ପରେ, କଃ ସଂସାରଃ = ସଂସାର କାହିଁ? ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ।

*୧୦. ବୟସ ବା ଯୌବନ ଅତିବାହିତ ହେଲାପରେ ରକ୍ତମାଂସର କ୍ଷୁଧା ଓ ତାହାର ଖେଳ କେଉଁଠାରେ ଥାଏ? ଜଳ ଶୁଖିଗଲେ ଜଳାଶୟ କେଉଁଠାରେ ଥାଏ? ସମ୍ପତ୍ତି କ୍ଷୟ ହୋଇଗଲା ପରେ କୁଟୁମ୍ବ ପରିଜନ କେଉଁଠାରେ ଥାଆନ୍ତି? ସତ୍ୟ ଅନୁଭୂତ ହେବା ପରେ ଆଉ ସଂସାର କେଉଁଠାରେ ଥାଏ?*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ଶଙ୍କର ଏଠାରେ ଚାରିଗୋଟି ବିଭିନ୍ନ ପ୍ରକାର ଉଦାହରଣ ମାଧ୍ୟମରେ କାର୍ଯ୍ୟ ଓ କାରଣର ସମ୍ବନ୍ଧ ଅତି ସୁନ୍ଦର ଭାବରେ ବୁଝାଇ ଦେଇଛନ୍ତି। ଯେଉଁଠାରେ କାରଣ ଶେଷ ହୋଇଯାଇଛି, ସେଠାରେ କାର୍ଯ୍ୟର ଅବସାନ ଘଟିଛି। ଅର୍ଥାତ୍ କାରଣ ବିନା କାର୍ଯ୍ୟ (ପରିଣାମ) ହୋଇପାରେନା।

ବୟସର ଗତିରେ ଯୌବନ ସମୟ ଅତିବାହିତ ହୋଇଗଲେ କାମ ଲାଳସାର ଉଚ୍ଛୁଙ୍ଖଳତା ଥାଏ କି? ଯେତେବେଳେ ରକ୍ତର ତେଜ ଖୁବ୍ ପ୍ରଖର, ମାଂସପେଶୀ ସୁଦୃଢ଼, ମନୁଷ୍ୟ ଯୌବନର ମାଦକତାରେ ମତୁଆଲା, ସେତେବେଳେ ସେ କାମଲାଳସା ପରିତୃପ୍ତ କରିବା ପାଇଁ ପାଗଳ। ତେଣୁ ଯୌବନରୁ କାମ ଭାବର ଉଦ୍ରେକ କାରଣକୁ ଦୂର କରିପାରିଲେ କାର୍ଯ୍ୟ ରୂପକ କାମଭାବ ଆପେ ଆପେ ଦୂରେଇ ଯାଇଥାଏ।

ଜଳ ଶୁଖିଗଲେ ଜଳାଶୟ ଆଉ ଜଳାଶୟ ହୋଇ ରହେ ନାହିଁ । ଆମେ ତାହାକୁ ଜଳାଶୟର ଶଯ୍ୟା ବୋଲି କହୁଁ । ଜଳ ଥିଲେ ଆମେ ତାହାକୁ ଜଳାଶୟ ବୋଲି କହୁ । ସେହିପରି ସଂସାରରେ ବାସନାରୂପ ଜଳ, ମନରୂପ ଜଳାଶୟରେ ରହିଲେ ସେହି ଜଳକୁ ପାନ କରିବା ନିମିତ୍ତ ବା ବାସନାକୁ ପୂରଣ କରିବା ନିମିତ୍ତ ମଣିଷ ପ୍ରଗାଢ଼ ଚେଷ୍ଟାକରେ । କିନ୍ତୁ ବାସନାରୂପ  ଜଳ ଶୁଖିଗଲେ, ପାନ କରିବାର ପ୍ରଶ୍ନ ଉଠେନା ।

ସମ୍ପତ୍ତି ଥିଲେ ବନ୍ଧୁ କୁଟୁମ୍ବ ଇତ୍ୟାଦି ପ୍ରତିପୋଷିତ ହୁଅନ୍ତି । ସମ୍ପତ୍ତି କ୍ଷୟ ହୋଇଗଲେ ମଣିଷ  ବନ୍ଧୁ ପରିଜନଙ୍କୁ ଆଉ ପ୍ରତିପୋଷଣ କରିପାରେନା । ବନ୍ଧୁ ପରିଜନ ଆପେ ଆପେ ଅଲଗା ହୋଇଯାନ୍ତି । ଧନସମ୍ପତ୍ତି ବଡ ଅସ୍ଥାୟୀ ବସ୍ତୁ । ସମ୍ପତ୍ତି କେତେବେଳେ କାହା ନିକଟକୁ ଆସେ ତାହା କେହି କହିପାରିବେ ନାହିଁ, ପୁଣି କେତେବେଳେ କାହାକୁ ଦରିଦ୍ରାଦପି ଦରିଦ୍ର କରି ଅନ୍ୟଲୋକ ନିକଟକୁ ଚାଲିଯାଏ, ତାହା ମଧ କେହି କହିପାରିବେ ନାହିଁ ।

ଏହିପରି ଭାବେ ତିନୋଟି ଉଦାହରଣ ଦ୍ୱାରା ପ୍ରମାଣିତ ହେଲା ଯେ କାରଣ ନ ଥିଲେ କାର୍ଯ୍ୟ ବା ଫଳାଫଳ ଅର୍ଥାତ୍ ପରିଣାମ ନ ଥାଏ । ଏହି ଉଦାହରଣ ମାଧ୍ୟମରେ ଅତି ସରଳ ଭାବରେ ଜୀବନର ଗୂଢ଼ତତ୍ତ୍ୱକୁ ବୁଝାଇବାକୁ ଯାଇ ଶଙ୍କର ସାଧକମାନଙ୍କୁ ଲକ୍ଷ୍ୟକରି କହିଛନ୍ତି, "ଯେତେବେଳେ ପ୍ରକୃତ ସତ୍ୟ ଅନୁଭୂତ ହୁଏ, ସେତେବେଳେ ମିଥ୍ୟା ସଂସାରର ଅସ୍ତିତ୍ୱ ଥାଏ କି ?"

ଖମ୍ବ ବିଷୟରେ ଯଥାଯଥ ଜ୍ଞାନ ନ ଥିବାରୁ ଅନ୍ଧକାର ମଧ୍ୟରେ କୌଣସି ଏକ ଖମ୍ବ ଯେପରି ଭ୍ରମାତ୍ମକ ଭୂତର ଧାରଣା ଆଣିଦିଏ, ସେହିପରି ପ୍ରକୃତ ସତ୍ୟ ସମ୍ବନ୍ଧରେ ଅନୁଭୂତି ନ ଥିବାରୁ ନାନା ପ୍ରକାର କପୋଳକଳ୍ପିତ ଧାରଣାଗୁଡିଏ ସୃଷ୍ଟି ହୋଇ ନାନା ଅଶାନ୍ତି ସୃଷ୍ଟି କରେ । ସେହି ଅଶାନ୍ତିକୁ ଦୂର କରିବା ନିମିତ୍ତ ଭ୍ରମବାସନାରେ ପରିଚାଳିତ ହୋଇ ମନୁଷ୍ୟ ନାନା ପ୍ରକାର କର୍ମରେ ଲିପ୍ତ ହୁଏ । ତା'ର ଉଦ୍ଦେଶ୍ୟ; ଚିରଶାନ୍ତି ଓ ସୁଖ କିପରି ଲାଭ କରିବ ।

କିନ୍ତୁ ପୂର୍ବ ଶ୍ଳୋକରେ ବୁଝାଇ ଦିଆଯାଇଛି ଯେ ଅଜ୍ଞାନତା ଦୂରହେବା ମାତ୍ରେ ଭ୍ରମଧାରଣା ଦୂର ହୋଇଯାଏ । ଭ୍ରମଧାରଣାଗୁଡିକ କେବଳ ଅଜ୍ଞାନ ଜନିତ କଳ୍ପନା ମାତ୍ର । ସେହି କଳ୍ପନାର ଅନ୍ତ ନାହିଁ ।

ତେଣୁ ଯେତେବେଳେ କଳ୍ପନା ବା ବାସନା ଦୂର ହୋଇଯାଏ କାରଣ ମଧ ଉଭେଇଯାଏ । କାରଣ ଉଭେଇ ଗଲା ପରେ କାର୍ଯ୍ୟ ନ ଥାଏ କି ଫଳ ନ ଥାଏ, ସେହି କାର୍ଯ୍ୟ କାରଣ ନଷ୍ଟ ହୋଇଯିବା ପରେ ଦୁଃଖ ବି ରହେ ନାହିଁ ।

ସୁତରାଂ ଆମର ସୂକ୍ଷ୍ମ ଇନ୍ଦ୍ରିୟଗୁଡ଼ିକ ସ୍ୱ ସ୍ୱ ଅଭ୍ୟାସ ଯୋଗୁଁ ବାହାର ଜଗତର ବିଷୟବସ୍ତୁ ସକଳର ତୃପ୍ତିଲାଭ କରିବା ପାଇଁ ପାଗଳ ପରି ଘୂରି ବୁଲୁଥାନ୍ତି। ସେହି ଘୂରି ବୁଲିବା ହିଁ ଅସୀମ ଦୁଃଖ। ଯେତେବେଳେ ପ୍ରକୃତ ସତ୍ୟର ଅନୁଭୂତି ଆସେ, ସେ ବାସନାଗୁଡ଼ିକ ଉଭେଇ ଯାଆନ୍ତି। ଘୂରି ବୁଲିବାର କାମ ସରିଯାଏ। ସେତେବେଳେ 'ବ୍ରହ୍ମବିତ୍ ବ୍ରହ୍ମୈବ ଭବତି'(ମୁଣ୍ଡକ ଉପନିଷଦ୍) ଅର୍ଥାତ୍ ବ୍ରହ୍ମଜ୍ଞାତା ନିଜେ ବ୍ରହ୍ମ ହୋଇଯାଏ। ଏହା ବ୍ୟତୀତ ଅନ୍ୟ ପନ୍ଥା ନାହିଁ।

**ମା କୁରୁ ଧନଜନଯୌବନଗର୍ବଂ**
**ହରତି ନିମେଷାତ୍କାଲଃ ସର୍ବମ୍।**
**ମାୟାମୟମିଦମଖିଳଂ ବୁଦ୍ଧ୍ୱା**
**ବ୍ରହ୍ମପଦଂ ତ୍ୱଂ ପ୍ରବିଶ ବିଦିତ୍ୱା ॥୧୧॥**
**(ଭଜ ଗୋବିନ୍ଦଂ ଭଜ ଗୋବିନ୍ଦଂ...)**

ମା = ନାହିଁ, କୁରୁ= କର, ଧନ = ଧନରେ, ଜନ = ଅନୁଗତ ଜନରେ, ଯୌବନ = ଯୌବନରେ, ଗର୍ବଂ = ଗର୍ବ, ହରତି = ହରଣ କରିନିଏ, ନିମେଷାତ୍ = ମୁହୂର୍ତ୍ତକ ମଧ୍ୟରେ, କାଲଃ = ସମୟ, ସର୍ବଂ = ସବୁ କିଛି, ମାୟାମୟଂ = ମାୟାପୂର୍ଣ୍ଣ, ଇଦଂ = ଏହି। ଅଖିଳଂ= ସମସ୍ତ (ଜଗତ), ବୁଦ୍ଧ୍ୱା = (ଏହା) ଜାଣି, ବ୍ରହ୍ମପଦଂ = ବ୍ରହ୍ମତ୍ୱରେ, ତ୍ୱଂ= ତୁମେ, ପ୍ରବିଶ = ପ୍ରବେଶ କର, ବିଦିତ୍ୱା = ଅନୁଭବ ଦ୍ୱାରା, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ।

୧୧. ଧନ, ଜନ ଓ ଯୌବନ ନିମିତ୍ତ ଗର୍ବ କରନାହିଁ। କାରଣ କାଳ ମୁହୂର୍ତ୍ତକ ମଧ୍ୟରେ ସେସବୁ ହରଣ କରିନିଏ। ସେହିଗୁଡ଼ିକର ଅସାରତାକୁ ଜାଣି ସେମାନଙ୍କୁ ତ୍ୟାଗକର ଓ ବ୍ରହ୍ମ ଅନୁଭୂତି ଅର୍ଜନ କର ଓ ବ୍ରହ୍ମରେ ଲୀନ ହୁଅ।

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ବୃଥା ଅହମିକା ଓ ଶୁଷ୍କ ଛଳନା ମଣିଷକୁ ସଂସାରରୂପୀ ଦୁଃଖ ଚକ୍ରରେ ବାନ୍ଧିରଖେ। ମଣିଷ ଯେତେବେଳେ ନିଜର ଶରୀର ମନ ଓ ବୁଦ୍ଧିର ପୂର୍ବ ଅଭ୍ୟାସ ବଳରେ ବାହାର ଜଗତର ବିଷୟବସ୍ତୁ ସହିତ ସମ୍ପର୍କ ରଖିବାକୁ ଚେଷ୍ଟାକରେ, ସେତେବେଳେ ନାନା ଘାତପ୍ରତିଘାତର ସମ୍ମୁଖୀନ ହୁଏ। କାରଣ ସଂସାରର ବିଷୟବସ୍ତୁଗୁଡ଼ିକ ମଧ୍ୟ ସ୍ୱ ସ୍ୱ ମାର୍ଗରେ ଅହରହ ବିଚରଣ କରୁଥାନ୍ତି। ବ୍ୟକ୍ତିବିଶେଷକୁ କେହି ଅପେକ୍ଷା କରୁନଥାନ୍ତି। ଫଳରେ ବ୍ୟକ୍ତିବିଶେଷ ନିଜର ବୃଥା ଅହମିକା ଯୋଗୁଁ ଜଗତର ସମସ୍ତ ବିଷୟବସ୍ତୁକୁ ମୋ ଲୋକ,

ମୋ ଜିନିଷ, ମୋ ଧାରଣା, ମୋ ଆନନ୍ଦ କହିବୁଲି ଦୁଃଖ ସମୁଦ୍ରରେ ଉବୁଟୁବୁ ହେଉଥାଏ ମାତ୍ର। ଏହି ଅହମିକା, ଏହି ବିଷୟବସ୍ତୁ ଓ ଏହି ଦୁଃଖ ହିଁ ସଂସାର।

ଧନସମ୍ପତ୍ତି, ପାରିବାରିକ ଅବସ୍ଥା, ବଳବୀର୍ଯ୍ୟ ଇତ୍ୟାଦି ଏକ ଏକ ଭଙ୍ଗା ଦଦରା ଖୁଣ୍ଟ। ଏହି ଖୁଣ୍ଟଗୁଡ଼ିକ ଉପରେ ଇନ୍ଦ୍ରିୟ ସୁଖରୂପକ ଘରଟି ତିଆରି ହୋଇଛି। ତେଣୁ ରକ୍ତମାଂସର କ୍ଷୁଧା ବିଷୟବସ୍ତୁର ମୋହ କେବଳ ହା-ହୁତାଶରେ ଶେଷହୁଏ।

ଏହି ବିଷୟ ପୂର୍ବ ଶ୍ଳୋକମାନଙ୍କରେ ବୁଝାଇ ଦିଆଯାଇଛି।

ଧନ ସମ୍ପତ୍ତି କ୍ଷଣସ୍ଥାୟୀ। ଚାହୁଁ ଚାହୁଁ ହାତରୁ ହାତକୁ ଚାଲିଯାଏ। ଯୌବନ ଚିରସ୍ଥାୟୀ ନୁହେଁ। ପାରିବାରିକ ଅବସ୍ଥା, ବନ୍ଧୁପରିଜନ, ଲୋକପ୍ରିୟତା ଓ ମମତାକୁ ଏଠାରେ 'ଜନ' ଶବ୍ଦ ମାଧ୍ୟମରେ ପ୍ରକାଶ କରାଯାଇଛି। ସେ ସବୁ ଗୋଟିଏ ଗୋଟିଏ ମୁହୂର୍ତ୍ତର ସମ୍ବନ୍ଧ ଉପରେ ନିର୍ଭର କରେ। ମନ ଟିକିଏ ବଦଳିଗଲେ ସମ୍ବନ୍ଧ ତତ୍କ୍ଷଣାତ୍ ବଦଳିଯାଏ।

କିନ୍ତୁ ଯେଉଁ ଶକ୍ତି ବଦଳରେ ଜୀବ ବିଭିନ୍ନ ସ୍ତରରେ ବିଭିନ୍ନ ଅନୁଭୂତି ଅର୍ଜନ କରେ, ସେହି ଶକ୍ତି ସାକ୍ଷୀ ଚୈତନ୍ୟ ବା ଆତ୍ମା ରୂପରେ ପ୍ରତ୍ୟେକଙ୍କର ହୃଦୟ କନ୍ଦରରେ ବିରାଜିତ। ମାୟାବଦ୍ଧ ଜୀବ ସେହି ଶକ୍ତିକୁ ଚିହ୍ନି ନ ପାରି ନିଜକୁ ସବୁର କର୍ତ୍ତାବୋଲି ମନେ କରୁଛି ଓ ନିଜର ପୂର୍ବ ଅନୁଭୂତି ଅନୁଯାୟୀ ଏକ ମାୟାମୟ ସୃଷ୍ଟି ଗଢ଼ିଚାଲୁଛି। ତାହାହିଁ ତା'ର ସଂସାର। ସେହି ସାକ୍ଷୀ ଚୈତନ୍ୟ ଆମ ଅନ୍ତରରେ ମଧ୍ୟ ରହିଅଛନ୍ତି। ତାଙ୍କୁ ଅନୁଭବ କରିବାକୁ ହେବ।

**ଦିନୟାମିନ୍ୟୌ ସାୟଂ ପ୍ରାତଃ**

**ଶିଶିରବସନ୍ତୌ ପୁନରାୟାତଃ ।**

**କାଲଃ କ୍ରୀଡତି ଗଚ୍ଛତ୍ୟାୟୁଃ**

**ତଦପି ନ ମୁଞ୍ଚାତ୍ୟାଶାବାୟୁଃ ॥୧୨॥**

**(ଭଜ ଗୋବିନ୍ଦଂ ଭଜ ଗୋବିନ୍ଦଂମ୍...)**

ଦିନୟାମିନ୍ୟୌ = ଦିନ ଓ ରାତି, ସାୟଂ = ସନ୍ଧ୍ୟା । ପ୍ରାତଃ = ସକାଳ । ଶିଶିରବସନ୍ତୌ = ଶୀତ ଓ ବସନ୍ତ, ପୁନଃ = ବାରମ୍ବାର, ଆୟାତଃ = ଆସେ (ଯାଏ), କାଲଃ = ସମୟ, କ୍ରୀଡତି = ଖେଳୁଛି, ଗଚ୍ଛତି = ଚାଲିଯାଉଛି, ଆୟୁଃ = ଜୀବନ (ନିଃଶ୍ୱାସ), ତତ୍ ଅପି = ତଥାପି, ନ = ନାହିଁ, ମୁଞ୍ଚତି = (ଜୀବ) ତ୍ୟାଗ କରେ, ଆଶା ବାୟୁଃ = ବାସନା ସକଳଙ୍କୁ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ ।

*୧୨. ଦିନ ପରେ ରାତି, ସକାଳ ପରେ ସନ୍ଧ୍ୟା, ଶୀତ ପରେ ବସନ୍ତ ବାରମ୍ବାର ଆସୁଛନ୍ତି ଯାଉଛନ୍ତି । କାଳ ଅତିବାହିତ ହେଉଛି ଓ ଜୀବନ ଶେଷ ହୋଇଯାଉଛି । ଏସବୁ ଦେଖି ଦେଖି ମଧ୍ୟ ଲୋକ ନିଜର ଆଶା ରାଶିକୁ ତ୍ୟାଗ କରିପାରୁନାହିଁ ।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ଦିନ ଧୀରେ ଧୀରେ କ୍ଷୟ ହୋଇ ରାତି ଆସୁଛି । ରାତି ମଧ୍ୟ ଶେଷ ହୋଇ ପୁଣି ଦିନକୁ ବାଟ ଛାଡିଦେଉଛି । ସକାଳର ଆଲୋକ ବଢ଼ିଚାଲୁଛି ଦିନ ୧୨ଟା ପର୍ଯ୍ୟନ୍ତ । ତାହାପରେ ଆଲୋକ କମିଯାଉଛି ଧୀରେ ଧୀରେ । ସନ୍ଧ୍ୟାରେ ଅନ୍ଧାର ଆସୁଛି । କାଳଚକ୍ରର ଗତିରେ ଦିନ ପରେ ଦିନ, ମାସ ପରେ ମାସ ଓ ବର୍ଷ ପରେ ବର୍ଷ ଗଡିଚାଲିଛି ଅହରହ । ମଣିଷର ଜୀବନ ନୀରବରେ ଧୀରେ ଧୀରେ ଶେଷହୋଇ ଯାଉଛି ସବୁରି ଅଲକ୍ଷ୍ୟରେ । ସମୟ ଅତିବାହିତ ହେବାରେ ଲାଗିଛି । ଭବିଷ୍ୟତ ବର୍ତ୍ତମାନ ହେଉଛି । ବର୍ତ୍ତମାନ ଅତୀତରେ ପରିଣତ ହେଉଛି । କୌଣସି ବ୍ୟକ୍ତି ବା ଘଟଣା ପାଇଁ ତ ସମୟ ଅପେକ୍ଷା କରୁନାହିଁ । ମଣିଷ ନିଜର ଅତୀତ ଅନୁଭୂତିକୁ ସ୍ମରଣ କରି ଭବିଷ୍ୟତ ପାଇଁ ଅତ୍ୟନ୍ତ ବ୍ୟସ୍ତ । ବର୍ତ୍ତମାନର ଧାରଣା ମନରୁ ଲିଭିଯାଉଛି । ଏହିପରି ଭାବରେ କାଳର ଗତିରେ ଆମର ସମସ୍ତ ଆଶା ଯୋଜନା ଧ୍ୱସ୍ତବିଧ୍ୱସ୍ତ ହେଉଛି । ଏହି ପ୍ରକାର ପରିବର୍ତ୍ତନଶୀଳ ହାସ୍ୟାସ୍ପଦ 'ତାମସା'କୁ ଅନୁଭବ କରି ବାଳକ ନଚିକେତା ନିଜର ବାପା ବାଜଶ୍ରବାଙ୍କୁ ସାନ୍ତ୍ୱନା ଦେଇ କହିଥିଲେ "ବାପା ! ଯାହାର ସୃଷ୍ଟି ଅଛି, ତାହାର ବିନାଶ ଅଛି । ଜନ୍ମହେଲେ ମରଣ ନିଶ୍ଚିତ । ଏ ଜଗତରେ କୌଣସି ପଦାର୍ଥ ଚିରସ୍ଥାୟୀ ନୁହେଁ ।"

ପୁଣି ସେହି ନଚିକେତା ନିଜର ଆଧ୍ୟାତ୍ମିକ ଗୁରୁ ଯମରାଜଙ୍କ ସହିତ ଆଲୋଚନା ସମୟରେ ଯମରାଜାଙ୍କର ଦୀର୍ଘ ଜୀବନ ରୂପକ ବରକୁ ପ୍ରତ୍ୟାଖ୍ୟାନ କରିଦେଇଥିଲେ । କାରଣ ଦୀର୍ଘଜୀବନ, କରାଳ କାଳ ନିକଟରେ କ୍ଷଣସ୍ଥାୟୀ ଅଟେ । ପୁଣି ନଚିକେତା ଯମରାଜାଙ୍କର ସ୍ୱର୍ଗ ସୁଖ, ସୁନ୍ଦରୀ ସ୍ତ୍ରୀ, ନର୍ତ୍ତକୀ ଇତ୍ୟାଦି ଅନ୍ୟ ବରକୁ ମଧ୍ୟ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । କାରଣ ସେଗୁଡ଼ିକ ମଧ୍ୟ କ୍ଷଣସ୍ଥାୟୀ ।

କାଳର ଗର୍ଭରେ ମଣିଷର ସମସ୍ତ ସୁଖ ସମ୍ଭୋଗ, ଆଶା ଆକାଂକ୍ଷା, ଧନ ଦୌଲତ ଇତ୍ୟାଦି ଲୀନ ହୋଇଯାଆନ୍ତି । କେବଳ ରହିଯାଏ ଦୁଃଖଦାୟକ ବାସନାରାଜି; ଓଃ ! କି ଯନ୍ତ୍ରଣାଦାୟକ ସେ ସ୍ମୃତି ।

ସ୍ୱପ୍ନରେ କୌଣସି ବିଷୟଭୋଗରେ ଆମେ ଆନନ୍ଦରେ ବିଭୋର ହୋଇଥାଉ । କିନ୍ତୁ ଜାଗ୍ରତ ହେଲେ ସେ ବିଷୟବସ୍ତୁ ଓ ଆନନ୍ଦ କେଉଁଆଡେ ଉଭେଇ ଯାଆନ୍ତି । ସେହିପରି ଜଗତର ବିଷୟବସ୍ତୁ ଗୁଡିକ ବଡ ଆକର୍ଷଣୀୟ ହୋଇଥାନ୍ତି କେବଳ ଭ୍ରମାତ୍ମକ ବୁଦ୍ଧିଯୋଗୁଁ । ବିଷୟବସ୍ତୁରେ ଯେଉଁ ମୋହ ବା ମାଦକତା, ତାହା ପ୍ରକୃତ ସତ୍ୟକୁ ଢ଼ାଙ୍କି ରଖିଥାଏ । 'ଈଶାବାସ୍ୟ ଉପନିଷଦ'ରେ କୁହାଯାଇଛି "ହିରଣ୍ମୟେନ ପାତ୍ରେଣ ସତ୍ୟସ୍ୟାପିହିତଂମୁଖମ୍" (୧୫ଶ୍ଳୋକ): ଅର୍ଥାତ୍ ସୁବର୍ଣ୍ଣ ନିର୍ମିତ ପାତ୍ରର ଉଜ୍ଜ୍ୱଳତା ଦ୍ୱାରା ପ୍ରକୃତ ସତ୍ୟ ଢ଼ଙ୍କା ହୋଇଯାଇଛି । ଜଗତର ପ୍ରତ୍ୟେକ ବିଷୟବସ୍ତୁ ଈଶ୍ୱରଙ୍କ ଦ୍ୱାରା ଆବୃତ ହୋଇଛି ।ଏହି ଯେଉଁ ଗୂଢ଼ତତ୍ତ୍ୱ 'ଈଶାବାସ୍ୟ' ଉପନିଷଦରେ ଗୁରୁ ଶିଷ୍ୟଙ୍କୁ କହିଲେ, ଶିଷ୍ୟ ତାହା ହୃଦୟଙ୍ଗମ କରିପାରି ନ ଥିଲେ । କାରଣ ଇନ୍ଦ୍ରିୟଜନିତ ସୁଖରୂପକ ସ୍ୱର୍ଣ୍ଣମୟ ପାତ୍ରର ଆବରଣ ନିଜର ସ୍ୱରୂପକୁ ଚିହ୍ନିବାରେ ମନୁଷ୍ୟ ନିକଟରେ ବାଧା ସୃଷ୍ଟି କରେ ।

ଏହି ଭ୍ରମବାସନା ଯୋଗୁଁ କ୍ଷଣକ ପାଇଁ ସୁନାର ହରିଣ ସୀତାଙ୍କୁ ଏତେ ପ୍ରଗାଢ଼ ଭାବରେ ଆକର୍ଷଣ କଲା, ଯାହା ଫଳରେ ନିଜର ପରମପୂଜ୍ୟ ପ୍ରାଣପ୍ରିୟ ରାମଙ୍କୁ କ୍ଷଣକ ପାଇଁ ଭୁଲିଗଲେ । ଏହାହିଁ ମାୟା ବା ଭ୍ରମର କାରସାଦି ।

ଆୟୁ ଧୀରେ ଧୀରେ କ୍ଷୟ ହେଉଛି କିନ୍ତୁ ବାସନା ଇନ୍ଦ୍ରିୟ ପରିପୁଷ୍ଟ ହୋଇ ଦ୍ରୁତ ବେଗରେ ବଢ଼ି ବଢ଼ି ଚାଲିଛି, ଶରୀର କ୍ଷୀଣ ହେଉଛି, ଉପଭୋଗ କରିବାର ଶକ୍ତି ରହୁନାହିଁ । କିନ୍ତୁ ଇନ୍ଦ୍ରିୟ ଲାଳସା ଚରିତାର୍ଥ କରିବା ପାଇଁ କ୍ଷୁଧା ବଢ଼ି ବଢ଼ି ଚାଲିଛି । ଲୁଚି ଲୁଚି ମରଣ ଆସି ପାଖରେ ପହଞ୍ଚି ଯାଉଛି ସଙ୍ଗରେ ରୋଗ ଓ କ୍ଷୟ ଇତ୍ୟାଦି ସଙ୍ଗୀମାନଙ୍କୁ ଧରି । ଅସଂଖ୍ୟ ଦୁଃଖ ଯନ୍ତ୍ରଣା ମଶାଣି ପର୍ଯ୍ୟନ୍ତ ସଙ୍ଗରେ ଗୋଡାଇଛନ୍ତି; ତଥାପି ମଣିଷ ଚାହୁଁଛି ସେହି ଦୁଃଖଦାୟକ ଭ୍ରମ ବିଷୟବସ୍ତୁର ଉପଭୋଗ ସୁଖ ।

ତେଣୁ ହେ ମାନବ ! ବୁଦ୍ଧିମାନ ହୁଅ । ବାସନା ତ୍ୟାଗକର । ମାନସିକ ପରିବର୍ତ୍ତନ ଓ ଦୁଃଖର ଅନ୍ତରାଳରେ ସର୍ବସୁଖଦାୟକ ପ୍ରକୃତ ସତ୍ୟର ଅନୁସନ୍ଧାନ କର । ତାହାହିଁ କେବଳ ସମସ୍ତ ସୁଖର ଆଧାର । ସାଂସାରିକ ବିଷୟବସ୍ତୁରୁ ମନକୁ ଫେରାଇ ସେହିଠାରେ ଲଗାଅ ।

**କା ତେ କାନ୍ତା ଧନଗତଚିନ୍ତା**
**ବାତୁଲ କିଂ ତବ ନାସ୍ତି ନିୟନ୍ତା ।**
**ତ୍ରିଜଗତି ସଜ୍ଜନସଂଗତିରେକା**
**ଭବତି ଭବାର୍ଣ୍ଣବତରଣେ ନୌକା ॥୧୩॥**
**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

କା = କେଉଁଠାରେ ଅଛି ? ତେ = ତୁମର, କାନ୍ତା = ସ୍ତ୍ରୀ, ଧନଗତ = ଧନ ନିମିତ୍ତ, ଚିନ୍ତା = ଚିନ୍ତା, ବାତୁଲ = ରେ ପାଗଳ, କିଂ = କ'ଣ, ତବ = ତୁମର, ନ ଅସ୍ତି = ନାହିଁ, ନିୟନ୍ତା = ନିୟନ୍ତ୍ରଣକାରୀ, ତ୍ରିଜଗତି = ତିନି ଜଗତରେ, ସଜ୍ଜନ = ମହତ ଲୋକର, ସଂଗତି = ସଂସ୍ପର୍ଶ, ଏକା = ଏକମାତ୍ର, ଭବତି = ହୁଏ, ଭବ-ଅର୍ଣ୍ଣବ-ତରଣେ = ଜନ୍ମ ମୃତ୍ୟୁ ରୂପୀ ସଂସାର ସାଗରକୁ ପାରହେବା ନିମିତ୍ତ, ନୌକା = ନୌକା, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ ।

*୧୩. ରେ ପାଗଳ ! ସ୍ତ୍ରୀ ଓ ଧନ ସମ୍ପତ୍ତି ନିମିତ୍ତ ଏତେ ଚିନ୍ତିତ କାହିଁକି ? ତୁମର କେହି ନିୟନ୍ତ୍ରଣକାରୀ ନାହାନ୍ତି କି? ଏହି ତିନି ଜଗତରେ ଜନ୍ମମୃତ୍ୟୁ ରୂପୀ ସଂସାର ସାଗରକୁ ପାର କରିବା ନିମିତ୍ତ ସତ୍‌ସଙ୍ଗ ହିଁ ନୌକା ସ୍ୱରୂପ ଅଟେ ।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

"ସ୍ତ୍ରୀ କିମ୍ବା ଧନସମ୍ପତ୍ତି ନିମିତ୍ତ ଏତେ ଚିନ୍ତିତ କାହିଁକି" ? ଏହି ସ୍ତ୍ରୀ ବିଷୟରେ ଅନ୍ୟ ପ୍ରକାରେ ମଧ୍ୟ କୁହାଯାଇଛି । "କାନ୍ତାଧରଗତଚିନ୍ତା"- ଅର୍ଥ ଯୁବତୀ ଅଧର ଚୁମ୍ବନ ଚିନ୍ତାରେ ଏତେ ବ୍ୟସ୍ତ କାହିଁକି ? କୌଣସି ବିଷୟରେ ଚିନ୍ତିତ ହେଲେ ଜୀବନରେ କିଛି ଲାଭ ହୁଏନା । କାରଣ କୌଣସି ବିଷୟରେ ଚିନ୍ତିତ ହେଲେ ମନ ଚଞ୍ଚଳ ବା ଅସ୍ଥିର ହୁଏ । ଚଞ୍ଚଳ ବା ଅସ୍ଥିର ମନ କୌଣସି କାର୍ଯ୍ୟ ସୁଚାରୁ ରୂପେ କରିପାରେ ନାହିଁ । ମଣିଷ ଭିତରେ ଯେଉଁ ସୃଷ୍ଟିକାରିଣୀ ଶକ୍ତି ରହିଛି, ମନ ସ୍ଥିର ସମୟରେ ସେହି ଶକ୍ତି ବଳରେ ଜୀବନର ଝଡଝଞ୍ଜାକୁ ସେ ସହଜରେ ଅତିକ୍ରମ କରେ । ମଣିଷର ଚିନ୍ତାଧାରା ଚଞ୍ଚଳ ବା ଦୁର୍ବଳ ଯୋଗୁଁ ସଂସାରର ଝଡଝଞ୍ଜା ପ୍ରବଳ ପରି ଜଣାଯାଏ ଓ ସେଥିରେ ମଣିଷ ଭାଙ୍ଗିପଡେ । ତେଣୁ ମନେରଖ, ଭୀରୁର ପରାଜୟ ସୁନିଶ୍ଚିତ । ଏହା ହିଁ ଜଗତର ନିୟମ ।

ଇନ୍ଦ୍ରିୟ ସୁଖ ନିମିତ୍ତ ଶକ୍ତି ଅପଚୟ କରିବା ବାସ୍ତବିକ ଖୁବ୍ ଦୁଃଖଦାୟକ ଏବଂ ଦୋଷାବହ। ତା'ପରେ ସହଧର୍ମଚାରିଣୀକୁ କେବଳ ଇନ୍ଦ୍ରିୟ ସୁଖ ନିମିତ୍ତ ବ୍ୟବହାର କରିବା ଏକ ନୀଚକର୍ମ ଏବଂ ଆତ୍ମ ଅପମାନ ମଧ୍ୟ। ଇନ୍ଦ୍ରିୟ ଉପଭୋଗ୍ୟ ବସ୍ତୁଠାରୁ ଜୀବନ ସଙ୍ଗିନୀର ସ୍ଥାନ ବହୁ ଉଚ୍ଚରେ। ଇନ୍ଦ୍ରିୟ ତୃପ୍ତି ନିମିତ୍ତ ସ୍ତ୍ରୀକୁ ଚଳନ୍ତି ସମ୍ପତ୍ତି ପରି ବ୍ୟବହାର କଲେ ଗୃହସଂସାର ରୂପକ ତପୋବନର ଅଧୋଗତି ହୁଏ ଓ ସ୍ତ୍ରୀ ଠାରେ ମାତୃତ୍ୱର ଗୌରବ ନଷ୍ଟ ହୁଏ। ଏହି ପ୍ରକାର ଭାବଧାରା ଯେତେବେଳେ ସାଧକର ହୃଦୟରେ ଜାଗ୍ରତ ହୁଏ, ସେତେବେଳେ ଏହିପରି ନୀଚକର୍ମ ଗୁଡ଼ିକର ଗତି ଧିମେଇ ଯାଏ। ଧୀରେ ଧୀରେ ସାଧକ ଭଗବାନଙ୍କୁ ସ୍ମରଣ କରି ଉନ୍ନତି ପଥରେ ଅଗ୍ରସର ହୁଏ। ଏଠାରେ ସମସ୍ତ ଶ୍ଳୋକଟି କେବଳ ଇନ୍ଦ୍ରିୟାସକ୍ତ ମାନବ ପ୍ରତି ଉଦ୍ଦିଷ୍ଟ ହୋଇଛି। ଆଚାର୍ଯ୍ୟ ଶଙ୍କର ସେହି ପ୍ରକାର ଇନ୍ଦ୍ରିୟାସକ୍ତମାନଙ୍କୁ ମୂର୍ଖଶିରୋମଣି ବୋଲି ଅଭିହିତ କରିଛନ୍ତି।

ମନ୍ଦ ଭାବନା, ମନ୍ଦ ଅଭ୍ୟାସର ବଶବର୍ତ୍ତୀ ହୋଇ ପତିତ ମାନବ କିପରି ଭାବେ ନିଜକୁ ନର୍କକୁଣ୍ଡରୁ ଉଦ୍ଧାର କରିବ ? ସାଧୁସନ୍ଥ ମେଳରେ ରହି ଅହରହ ମହତ୍‌ଚିନ୍ତା ଓ ମହତ୍ କାର୍ଯ୍ୟ କଲେ ଧୀରେ ଧୀରେ ନିଜକୁ ପତିତ ଅବସ୍ଥାରୁ ଉଦ୍ଧାର କରିବ। ଧୀରେ ଧୀରେ ସୁଚିନ୍ତାରେ ମହତ୍‌କର୍ମ କରୁ କରୁ ପୁରୁଣା ମନ୍ଦ ଅଭ୍ୟାସଗୁଡ଼ିକ ଆପେ ଆପେ ମନରୁ ଦୂରେଇ ଯିବ।

ଅହରହ ମହତ୍ ଭାବନା ଓ ମହତ୍ କର୍ମରେ ରତ ହେଉ ହେଉ ସାଧକର ମନରେ ନୂତନ ପ୍ରେରଣା ଓ ନୂତନ ଅନୁସନ୍ଧାନର ଜିଜ୍ଞାସା ପ୍ରବଳ ହୋଇଉଠେ। ସେହି ଜିଜ୍ଞାସାର ଗତି ଏତେ ପ୍ରବଳ ହୋଇଉଠେ ଯେ ସେ ପ୍ରଖର ଗତିରେ ଜୀବନର ପରମ ଲକ୍ଷ୍ୟସ୍ଥଳକୁ ଧାବିତ ହୁଏ।

ଶାରୀରିକ ସଂଯମ ଅର୍ଥାତ୍ ଇନ୍ଦ୍ରିୟ ଦମନ ମନରେ ସମଭାବ ଆଣେ। ମନରେ ସମଭାବ ଆସିଲେ ସନ୍ତୋଷ ଦେଖାଦିଏ। ଅର୍ଥାତ୍ ବୁଦ୍ଧି ସବୁକଥା ବିଚାର କରି ସନ୍ତୋଷ ପ୍ରକାଶ କରେ। ଏହିପରି ଅବସ୍ଥାରେ ସାଧକର ଶାସ୍ତ୍ର ଆଲୋଚନା ଓ ବିଚାର ଖୁବ୍ ଫଳପ୍ରଦ ହୁଏ। ତେଣୁ ଏହି ପ୍ରକାର ଫଳପ୍ରାପ୍ତି ନିମିତ୍ତ ପ୍ରାରମ୍ଭିକ ଅବସ୍ଥାରେ ସତ୍‌ସଙ୍ଗ ଏକାନ୍ତ ଆବଶ୍ୟକ। ସତ୍‌ସଙ୍ଗ ପ୍ରାରମ୍ଭିକ ଅବସ୍ଥାରେ ଯେପରି ସାହାଯ୍ୟକାରୀ ପରବର୍ତ୍ତୀ ଅବସ୍ଥାରେ ସେହିପରି ଫଳଦାୟକ।

ଆଧ୍ୟାତ୍ମିକ ଗୁରୁ ଓ ଆଧ୍ୟାତ୍ମିକ ସହାଧ୍ୟାୟୀଙ୍କର ସଂସ୍ପର୍ଶ ଜୀବନ ତମାମ୍ ଆମକୁ ସାହାଯ୍ୟ କରି ଚାଲିଥାଏ। ତେଣୁ ସତ୍‌ସଙ୍ଗକୁ ନୌକା ସହିତ ତୁଳନା କରାଯାଇଛି।

ନୌକା ଆମ୍ଭମାନଙ୍କୁ କେବଳ ନଦୀର ଏକ କୂଳରୁ ଅନ୍ୟ କୂଳକୁ ନେବା କାର୍ଯ୍ୟ କରି ନ ଥାଏ। ନଦୀର ଅନ୍ୟ କୂଳରେ ପହଞ୍ଚିବା ପର୍ଯ୍ୟନ୍ତ ନାନା ଝଡତୋଫାନରୁ ଓ ଜଳଚର ହିଂସ୍ରଜନ୍ତୁର ଆକ୍ରମଣରୁ ରକ୍ଷା କରି ନିରାପଦରେ ନେଇ, ଅନ୍ୟ କୂଳରେ ପହଞ୍ଚାଇ ଦେଇଥାଏ। ନଦୀରେ ତରଙ୍ଗର ମାଡ ନୌକା ସହିଥାଏ। ସେତେବେଳେ ଆମେ ଟିକିଏ ଦୋହଲିଯାଉ। କିନ୍ତୁ ନିରାପଦରେ ଅନ୍ୟ କୂଳରେ ପହଞ୍ଚୁ।

ତେଣୁ ଅନ୍ତରର ମନ୍ଦ ଭାବନା ରୂପକ ଶତ୍ରୁ କବଳରୁ ରକ୍ଷା ପାଇବାର ଏକମାତ୍ର ଉପାୟ ହେଉଛି ସତ୍‌ସଙ୍ଗ ବା ସାଧୁସଙ୍ଗ।

ଏହି ଦ୍ୱାଦଶ ଶ୍ଳୋକଠାରୁ ଦ୍ୱାଦଶ ମଞ୍ଜରିକା ସ୍ତୋତ୍ରର ସମାପ୍ତି ହେଲା। ଏହି ଦ୍ୱାଦଶ ଶ୍ଳୋକ ସିଧାସଳଖ ଭାବେ ଶଙ୍କରଙ୍କ ଲେଖନୀ ନିଃସୃତ। କିନ୍ତୁ ଅନେକ ସ୍ଥଳରେ ଆମେ ଆହୁରି ଏକ ଶ୍ଳୋକ ଦେଖିବାକୁ ପାଉଁ ଯେଉଁଥିରେ କିପରି ଅବସ୍ଥାରେ ଶଙ୍କର ଏହି ଶ୍ଳୋକ ଲେଖିଥିଲେ ତାହା ବର୍ଣ୍ଣିତ ହୋଇଛି। ଯଥା-

**ଦ୍ୱାଦଶମଞ୍ଜରିକାଭିରେଷଃ କଥିତୋ ବୈୟାକରଣଶିଷ୍ୟଃ।**

**ଉପଦେଶୋଽଭୁଦ୍‌ବିଦ୍ୟାନିପୁଣୈଃ ଶ୍ରୀମଦ୍‌ଶଙ୍କରଭଗବତ୍‌ଚରଣୈଃ।**

ଏହାପରେ ଅବଶିଷ୍ଟ ୧୪ଟି ଶ୍ଳୋକ ଚତୁର୍ଦ୍ଦଶ ମଞ୍ଜରିକା ସ୍ତୋତ୍ର ନାମରେ କଥିତ। ଏହି ୧୪ଟି ଶ୍ଳୋକ ଶଙ୍କରଙ୍କର ୧୪ଜଣ ଶିଷ୍ୟମାନଙ୍କ ଦ୍ୱାରା ରଚିତ ବୋଲି କୁହାଯାଏ।

**ଜଟିଲୋ ମୁଣ୍ଡୀ ଲୁଞ୍ଛିତକେଶଃ**
**କାଷାୟାମ୍ବରବହୁକୃତବେଷଃ ।**
**ପଶ୍ୟନ୍ନପି ଚ ନ ପଶ୍ୟତି ମୂଢ଼ୋ**
**ହ୍ୟୁଦରନିମିତ୍ତଂ ବହୁକୃତବେଷଃ ॥୧୪॥**
**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

ଜଟିଲଃ = ଜଟାଧାରୀ, ମୁଣ୍ଡୀ = ଲଣ୍ଡାମୁଣ୍ଡ, ଲୁଞ୍ଛିତ କେଶଃ = ଗୋଟି ଗୋଟି କରି ମୁଣ୍ଡବାଳ ଉପାଡି ପକାଇଥିବା, କାଷାୟ-ଅମ୍ବର-ବହୁକୃତ-ବେଷଃ = ଗେରୁଆ ବସନଧାରୀ। ପଶ୍ୟନ୍-ଅପି ଚ = ଦେଖିସାରି ମଧ, ନ = ନାହିଁ, ପଶ୍ୟତି = ଦେଖନ୍ତି, ମୂଢ଼ଃ = ମୂର୍ଖ, ହି = ପ୍ରକୃତରେ, ଉଦର-ନିମିତ୍ତଂ = କେବଳ ପେଟ ପାଇଁ, ବହୁକୃତ ବେଷଃ = ବିଭିନ୍ନ ପ୍ରକାର ଛଳନାତ୍ମକ ବେଶ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ।

*୧୪. କେହି ମୁଣ୍ଡରେ ଜଟାବାନ୍ଧି, କେହି ଲଣ୍ଡାହୋଇ, କେହି ଗୋଟି ଗୋଟି କେଶକୁ ଉପାଡି ସଫାକରି, କେହି ଅବା ଗେରୁଆ ବସନ ପିନ୍ଧି, ନିଜକୁ ବୋକା ବନାଉଛନ୍ତି। ସେମାନେ ଦେଖି ନ ଦେଖିବା ପରି ହେଉଛନ୍ତି। ପ୍ରକୃତରେ ଏ ସମସ୍ତ ରୂପ କେବଳ ସେମାନଙ୍କର ଉଦର ପୋଷଣ ନିମିତ୍ତ ବ୍ୟବହୃତ ହେଉଛି।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ଖ୍ରୀଷ୍ଟିୟାନ୍ ଧର୍ମଶାସ୍ତ୍ର ବାଇବେଲ୍‌ରେ ଏକ ଚମତ୍କାର ଗପ ଅଛି। ସେହି ଧର୍ମଶାସ୍ତ୍ର ଅନୁଯାୟୀ ଆଦାମ୍ ହେଉଛନ୍ତି ପୃଥିବୀର ପ୍ରଥମ ମାନବ। ତାଙ୍କର ଦ୍ୱିତୀୟ ପୁତ୍ରର ନାମ ହେଉଛି କେନ୍। ସେହି କେନ୍ ଜୀବଜଗତରେ ନାନା ହତ୍ୟା ଲୁଟତରାଜ କରି ନାନା ଅଶାନ୍ତି ସୃଷ୍ଟି କଲା। ସେ କେବେ ଶାରୀରିକ ପରିଶ୍ରମ କରି ନିଜର ଜୀବିକା ଉପାର୍ଜନ କରିବାକୁ ଚାହୁଁ ନ ଥିଲା। ତେଣୁ କୌଣସି ଗୁପ୍ତ ସ୍ଥାନରେ ଲୁଚିରହି ବାଟୋଇମାନଙ୍କୁ ଅଚାନକ ଭାବେ ଆକ୍ରମଣ କରି ହତ୍ୟା କରୁଥିଲା ଓ ସେମାନଙ୍କର ସମସ୍ତ ଜିନିଷ ପତ୍ର ଲୁଟ୍‌କରି ମହା ଆରାମରେ ଚଳୁଥିଲା। ଅଳ୍ପ ପରିଶ୍ରମରେ ଅସରନ୍ତି ସୁଖ ଲାଭ କରିବା ଏକ ଘୃଣ୍ୟ ଏବଂ ଭୟାବହ ଚିନ୍ତାଧାରା। ଯେଉଁଠାରେ ଏହି ନୀତି ଅବଲମ୍ବନ କରାଯାଏ, ସେ ଜାତି, ସେ ସମାଜ ଆଦର୍ଶ ରହିତ ହୋଇ ଅତି ନୀଚ ହୀନ ଭାବେ ନଷ୍ଟଭ୍ରଷ୍ଟ ହୋଇଯାଏ।

ଏହି ପ୍ରକାର ଲୋକଙ୍କର ପୁତ୍ରପୌତ୍ରମାନେ ମଧ୍ୟ ଆମ ସମୟରେ ଓ ଆମ ସମାଜରେ ଦେଖିବାକୁ ମିଳୁଛନ୍ତି । ସମାଜର ପ୍ରତ୍ୟେକ ସ୍ତରରେ ସବୁ ସମୟରେ ଏପରି ଲୋକ ବହୁତ ଥା'ନ୍ତି । ଆଚାର୍ଯ୍ୟ ଶଙ୍କରଙ୍କ ସମୟରେ ମଧ୍ୟ ଏହି ପ୍ରକାର ଲୋକଙ୍କର ଅଭାବ ନ ଥିଲା । ଶଙ୍କରଙ୍କ ସମୟରେ ବହୁ କର୍ମକୋଢ଼ି ଶାରୀରିକ ପରିଶ୍ରମ ନ କରି ଜଟା କୌପୀନଧାରୀ ହୋଇ ଲୋକଙ୍କର ସରଳତାର ସୁଯୋଗ ନେଇ ବିନା ଶ୍ରମରେ ସୁଖମୟ ଜୀବନଯାପନ ନିମିତ୍ତ ସନ୍ନ୍ୟାସୀରୂପ ଧାରଣ କରୁଥିଲେ । ଏହି ପ୍ରକାର ଲୋକ ସର୍ବଦା ଘୃଣାର ପାତ୍ର । କିନ୍ତୁ ଏହି ପ୍ରକାର ଲୋକ ଯେତେବେଳେ ସମାଜରେ କୌଣସି ମୁଖ୍ୟସ୍ଥାନ ଯଥା ରାଜନୈତିକ ନେତା, ମନ୍ତ୍ରୀ ବା ରାଜ୍ୟପାଳର ଆସନ ଦଖଲ କରନ୍ତି, ସେତେବେଳେ ସମାଜରେ ସେମାନଙ୍କ ଦ୍ୱାରା ଅପୂରଣୀୟ କ୍ଷତିହୁଏ । ସେମାନଙ୍କ ସଂସ୍ପର୍ଶରେ ଆସିଲେ ଆମର ଦୁଃଖଭୋଗ ବ୍ୟତୀତ ଅନ୍ୟ ଉପାୟ ନ ଥାଏ । ବନ୍ୟା, ମରୁଡ଼ି ଓ ଦୁର୍ଭିକ୍ଷ ଇତ୍ୟାଦି ଅବସ୍ଥାକୁ ଯେପରି  ବାଧହୋଇ ଆମେ ସହ୍ୟକରୁ, ସେହିପରି ସେମାନଙ୍କ ଅତ୍ୟାଚାରକୁ ସହ୍ୟ କରିବା ପାଇଁ ବାଧ ହେଉ ।

ତେଣୁ ଆଚାର୍ଯ୍ୟ ଶଙ୍କର ଏହି ପ୍ରକାର ଆତ୍ମ ପ୍ରତାରିତ ଲୋକମାନଙ୍କୁ ଜୀବନର ଚରମ ପବିତ୍ର ସନ୍ନ୍ୟାସ ବ୍ରତର ପୋଷାକ ପିନ୍ଧିବାର ଦେଖି ଏହି ଶ୍ଳୋକରେ ତାହା ପ୍ରକାଶ କରିଛନ୍ତି ।

ସେହି ତଥାକଥିତ ଜଟା କୌପୀନଧାରୀ ସାଧୁଗଣ, ନିଜର ପରମ ଲକ୍ଷ୍ୟ ବିଷୟରେ ଟିକିଏ ହେଲେ ସଜାଗ ନ ଥାନ୍ତି । ବହୁ ଶ୍ରମସାଧ କରି ଏପରି ପୋଷାକରେ ଆଚ୍ଛାଦିତ ହୋଇ ମଧ୍ୟ ଉନ୍ନତି ଆଡକୁ ଅଗ୍ରସର ହେବା ନିମିତ୍ତ ଚେଷ୍ଟା ବି କରନ୍ତି ନାହିଁ । ଏହିପରି ଭାବରେ ସେମାନଙ୍କର ଜୀବନକାଳ ଶେଷ ହୋଇଯାଏ । ତେଣୁ ଘରସଂସାର ସୁଖକୁ ତ୍ୟାଗକରି ବୈରାଗୀର ପୋଷାକକୁ ପିନ୍ଧିବା କେବଳ ସରଳ ମାନବ ସମାଜରେ ଉଦର ପୋଷଣ କରିବାକୁ ହିଁ ସାହାଯ୍ୟ କରିଥାଏ ।

ଯଦି ଶଙ୍କରଙ୍କ ସମୟରେ ଉଦର ପୋଷଣ ନିମିତ୍ତ ଲୋକେ ଭଣ୍ଡ ବାବାଜୀର ପୋଷାକ  ପରିଧାନ କରିଥାନ୍ତି, ତାହାହେଲେ ଆଜିକାଲି ଆହୁରି ଅଧିକ ସଂଖ୍ୟକ ଲୋକେ ପେଟ ପୋଷିବା ପାଇଁ ନାନା ଛଳନାମୟ ପୋଷାକ ପିନ୍ଧି ସମାଜରେ ଘୂରିବୁଲିବା ଅଯୌକ୍ତିକ ହେବନାହିଁ ।

ସେଥି ନିମିତ୍ତ ଦେଶ ସେବା ନାମରେ, ଶାନ୍ତିଶୃଙ୍ଖଳା ରକ୍ଷା କରିବା ତଥା ଦେଶ ଓ ଜାତିକୁ ଉନ୍ନତି ଆଡକୁ ଅଗ୍ରସର କରାଇବାର ବାହାନାରେ, ସମାଜରେ ଧର୍ମପ୍ରଚାର

କରିବା ଛଳନାରେ କେତେ ଭଣ୍ଡନେତା, କେତେ ଭଣ୍ଡ ପୋଲିସ, କେତେ ଭଣ୍ଡ ଶିଳ୍ପପତି, କେତେ ଭଣ୍ଡ ଧର୍ମପ୍ରଚାରକ, କେତେ ଭଣ୍ଡ ଶିଳ୍ପୀ ଦେଶରେ ଘୂରି ବୁଲୁଛନ୍ତି ତାହାର ଇୟତ୍ତା ନାହିଁ। ଏ ସମସ୍ତ କେବଳ ନିଜର ଆତ୍ମସ୍ୱାର୍ଥ ନିମିତ୍ତ କୁମ୍ଭୀର କାନ୍ଦଣା କାନ୍ଦୁଛନ୍ତି।ବାସ୍ତବିକ ସାଧୁତା ଓ ସଚ୍ଚୋଟ ପଣିଆ ପ୍ରକାଶ କରିବାରେ ମନୁଷ୍ୟ ଯେପରି ବୀରତ୍ୱ ପ୍ରଦର୍ଶନ କରିପାରେ, ମିଥ୍ୟା ଓ ପ୍ରତାରଣା ପ୍ରଦର୍ଶନରେ ମଧ୍ୟ ସେହିପରି ପରାକାଷ୍ଠା ଦେଖାଇପାରେ। ଛଳନାମୟ ଜଟାଜୁଟଧାରୀ ଗେରୁଆ ବସ୍ତ୍ର ପରିଧାନକାରୀମାନେ ଜଗତରେ ସବୁ ସମୟରେ ବିଦ୍ୟମାନ। ବାଘମୁଖା ପିନ୍ଧା ଗଧିଆଙ୍କର ଅସ୍ତିତ୍ୱ ଜଗତରେ ନୂଆ ନୁହେଁ, କିନ୍ତୁ ଆଧ୍ୟାତ୍ମିକ ରାଜ୍ୟରେ ଏପରି ପ୍ରତାରଣା ଯେତେ କ୍ଷତିକାରକ ଅନ୍ୟ କୌଣସି କ୍ଷେତ୍ରରେ ସେତେ କ୍ଷତିକାରକ ନୁହେଁ। କି ରାଜନୀତି, କି ଅର୍ଥନୀତି, କି ବିଜ୍ଞାନ, କି ସମାଜସେବା ଇତ୍ୟାଦି ପ୍ରତ୍ୟେକ କ୍ଷେତ୍ରରେ ଏହି ପ୍ରକାର ପ୍ରତାରକ ସର୍ବତ୍ର ବିରାଜିତ। ପୁରାଣ ଯୁଗରେ କାମଲୋଲୁପୀ ଲଙ୍କାର ରାକ୍ଷସରାଜ ରାବଣ ସନ୍ନ୍ୟାସୀ ପୋଷାକରେ ସୀତାଙ୍କୁ ହରଣ କରିବାର ସୁଯୋଗ ନେଇଥିଲା।

ଅନେକ ସମୟରେ ନରହତ୍ୟାକାରୀମାନେ ମଧ୍ୟ ସନ୍ନ୍ୟାସୀର ପୋଷାକ ପରିଧାନ କରି ଶତ ଶତ ସରଳ ବିଶ୍ୱାସୀ ହିନ୍ଦୁ ନରନାରୀଙ୍କର ଭକ୍ତିପୂତ ନମସ୍କାର ଗ୍ରହଣ କରିଥାନ୍ତି। ଯେତେବେଳେ ସରଳ ବିଶ୍ୱାସୀ ନରନାରୀଙ୍କର ଭକ୍ତି ନମସ୍କାର ଗ୍ରହଣ କରନ୍ତି, ସେତେବେଳେ ସେମାନେ ସନ୍ନ୍ୟାସୀର ମହାତ୍ମ୍ୟ ବିଷୟରେ ପୂର୍ଣ୍ଣ ସଚେତନ ଥାନ୍ତି। ନମସ୍କାର ଗ୍ରହଣ ସମୟରେ ଜୀବନର ମହତ ଲକ୍ଷ୍ୟ ବିଷୟରେ ଲୋକମାନଙ୍କୁ କହୁଥାନ୍ତି, ଧର୍ମ ବିଷୟରେ ଉପଦେଶ ଦେଉଥାନ୍ତି। ତେଣୁ ସେମାନେ ପ୍ରକୃତରେ ସନ୍ନ୍ୟାସୀର ମହନୀୟ ଜୀବନ ବିଷୟରେ ସମ୍ପୂର୍ଣ୍ଣ ସଜାଗ। କିନ୍ତୁ ସେ ନିଜେ ସେହି ମହତ୍ ଲକ୍ଷ୍ୟ ଦିଗରେ ନିଜକୁ ଚଳାଇପାରନ୍ତି ନାହିଁ। ତେଣୁ ସେ ମୂଢ଼ 'ପଶ୍ୟନ ଅପି ଚ ନ ପଶ୍ୟତି,' ଅର୍ଥାତ୍ ଦେଖି କରି ମଧ୍ୟ ଦେଖନ୍ତି ନାହିଁ।

ତେବେ ପ୍ରଶ୍ନ ହୋଇପାରେ, ମାନବ ଘରଦ୍ୱାର ଛାଡି, ଜଟା କୌପୀନ ପିନ୍ଧି ଘୂରି ବୁଲୁଛି କାହିଁକି ? ତାହାର ଉତ୍ତରରେ ଏତିକି କୁହାଯାଇପାରେ ଯେ ସେହି ନୀଚ ଘୃଣ୍ୟ ମାନବକୀଟ ନିଜର ଶକ୍ତି ସାମର୍ଥ୍ୟରେ ଜୀବିକା ଅର୍ଜନ ନ କରି ଏହି ପ୍ରକାର ଛଳନାମୟ ପୋଷାକ ପିନ୍ଧି ଉଦର ପ୍ରତିପୋଷଣର ସହଜ ରାସ୍ତାରେ ଗତି କରୁଥାନ୍ତି। ପ୍ରକୃତରେ ସେମାନେ ସମାଜ ପ୍ରତି ଏକ ବିପଦ। କେବଳ 'ଉଦର ନିମିତ୍ତମ୍' ଏ ପ୍ରକାର ପୋଷାକ ପିନ୍ଧିଥାନ୍ତି।

ଅସଂଯତ ମନ ପାଖରେ ଜୀବନର ପରମଲକ୍ଷ୍ୟ ଠାରୁ ରକ୍ତମାଂସର ଚାହିଦା

ଶ୍ରେଷ୍ଠ ବିବେଚିତ ହୁଏ। ଇନ୍ଦ୍ରିୟାସକ୍ତ ମାନବ ସର୍ବଦା ମହତ ଲକ୍ଷ୍ୟରୁ ସ୍ଖଳିତ ହୁଏ। ଗୀତାରେ ଅଛି-

"ଯତତୋ ହ୍ୟପି କୌନ୍ତେୟ ପୁରୁଷସ୍ୟ ବିପଶ୍ଚିତଃ।
ଇନ୍ଦ୍ରିୟାଣି ପ୍ରମାଥୀନି ହରନ୍ତି ପ୍ରସଭଂ ମନଃ।।"

ଶଙ୍କରଙ୍କର ପ୍ରଧାନ ଶିଷ୍ୟ ଶ୍ରୀ ପଦ୍ମପାଦ ଏହି ଶ୍ଳୋକଟି ଲେଖିଛନ୍ତି।

**ଅଙ୍ଗଂ ଗଲିତଂ ପଲିତଂ ମୁଣ୍ଡଂ**
**ଦଶନବିହୀନଂ ଜାତଂ ତୁଣ୍ଡମ୍।**
**ବୃଦ୍ଧୋ ଯାତି ଗୃହୀତ୍ୱା ଦଣ୍ଡଂ**
**ତଦପି ନ ମୁଞ୍ଚତ୍ୟାଶାପିଣ୍ଡମ୍ ।।୧୫।।**
**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

ଅଙ୍ଗ = ଶରୀର, ଗଲିତଂ = ଚମ ଧୁଡୁଧୁଡୁ ହେବା, ପଲିତଂ = ଧଳା ହୋଇଯିବା, ମୁଣ୍ଡଂ = ମୁଣ୍ଡର କେଶ, ଦଶନବିହୀନଂ = ଦନ୍ତହୀନ, ଜାତଂ = ହେବା, ତୁଣ୍ଡମ୍ = ମୁଖ (ପାଟି), ବୃଦ୍ଧଃ = ବୁଢ଼ାଲୋକ, ଯାତି = ଯାଏ, ଗୃହୀତ୍ୱା = ଧରି, ଦଣ୍ଡଂ = ବାଡି, ତଦପି = ତଥାପି, ନ = ନାହିଁ, ମୁଞ୍ଚତି = ଛାଡେ, ଆଶାପିଣ୍ଡମ୍ = ଆଶା ବା ବାସନା ସକଳକୁ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ।

*୧୫. ଚମ ଧୁଡୁଧୁଡୁ ହେଲାଣି। ମୁଣ୍ଡର ବାଳ ଧଳା ହୋଇଗଲାଣି। ମୁହଁରେ ଦାନ୍ତ ନାହିଁ। ଏହିପରି ଅବସ୍ଥାରେ ବୃଦ୍ଧ ନଇଁ ନଇଁ ବାଡି ଧରି ଚାଲିଲାଣି। ତଥାପି ସେ ବାସନା ସକଳକୁ ଛାଡି ପାରୁନାହିଁ।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ବିଷୟବସ୍ତୁ ଉପଭୋଗ ନିମିତ୍ତ ବାସନା ଯେ କେତେ ପ୍ରବଳ, ତାହା ଏହି ଶ୍ଳୋକରେ ବୁଝାଇ ଦିଆଯାଇଛି। କୌଣସି ବ୍ୟକ୍ତିର ଯେତେବେଳେ ଯୌବନାବସ୍ଥା ଓ ଉତ୍ତମ ସ୍ୱାସ୍ଥ୍ୟ ଥାଏ ସେତେବେଳେ ତା'ର ଇନ୍ଦ୍ରିୟ ଗୁଡିକ ସ୍ୱଭାବତଃ ଶକ୍ତିଶାଳୀ ଥା'ନ୍ତି। ଏହା ପ୍ରତ୍ୟେକେ ବୁଝି ଥାଆନ୍ତି। ଜଗତର ପ୍ରତ୍ୟେକ ବ୍ୟକ୍ତି କିପରି ଇନ୍ଦ୍ରିୟମାନଙ୍କର ଶିକାର ହୁଅନ୍ତି, ତାହା ଆମେ ସମସ୍ତେ ଜାଣୁ।

ଇନ୍ଦ୍ରିୟ ବିଷୟରେ ଏତିକି କହିଲେ ଶେଷ ହେବ ନାହିଁ। ବୟସ ଚାଲିଗଲା ପରେ ବାର୍ଦ୍ଧକ୍ୟରେ ମଣିଷର ଅବସ୍ଥା ଲେଖକ ଅତି ସୁନ୍ଦର ଭାବରେ ଏଠାରେ ବର୍ଣ୍ଣନା କରିଛନ୍ତି।

ଲୋଳିତ ଚର୍ମ, ପକ୍ୱ କେଶ, ଦନ୍ତହୀନ ମୁଖ ଏହିପରି ଅବସ୍ଥାରେ ବୃଦ୍ଧ ବାଡି ଖଣ୍ଡିଏ ଧରି ନଇଁ ନଇଁ ଚାଲିଛି। ଏହି ଅବସ୍ଥା ଦେଖିଲେ ସାଧାରଣତଃ ମନେହେବ ଯେ ତା'ର ସମସ୍ତ ଇନ୍ଦ୍ରିୟଗୁଡିକ ଦୁର୍ବଳ ହୋଇ ପଡିଛନ୍ତି ଏବଂ ତାହାର ମନରେ ରକ୍ତମାଂସର କ୍ଷୁଧା ନାହିଁ। କିନ୍ତୁ ହାଏ ! ବଡ ପରିତାପର ବିଷୟ କାମନା ବାସନା ତାକୁ ପରିତ୍ୟାଗ କରି ନ ଥାନ୍ତି। ବରଂ ଆମେ ଦେଖିବାକୁ ପାଉ ତାହାର ମନର ପିପାସା ବହୁତ। ବୁଦ୍ଧି ତାର କେତେ ଯୋଜନା କରି ଚାଲିଛି। କିନ୍ତୁ ଦୁର୍ବଳ ଶରୀର ବାସନାଗୁଡିକୁ ଚରିତାର୍ଥ କରିବା ନିମିତ୍ତ କାର୍ଯ୍ୟକ୍ଷମ ହେଉନାହିଁ। ଜେଲଖାନାରେ ଥିଲାବେଳେ କଏଦି ତାହାର ଗୃହସଂସାର ପୁତ୍ରକନ୍ୟାଙ୍କର ହସ କୌତୁକ ଇତ୍ୟାଦି ମନେପକାଏ। ଅଥଚ ଜେଲ୍‌ଖାନାରେ ରହି ଆଖିରେ ସେ ସବୁ ନ ଦେଖି ମନେ ମନେ ବଡ କ୍ଷୁର୍ଣ୍ଣହୁଏ। ସେହିପରି ବୃଦ୍ଧ କୌଣସି ସୁଖସମ୍ଭୋଗକୁ ଉପଭୋଗ କରି ନପାରି ଦୁଃଖିତ ହୁଏ।

ବାସନା ପରିତୃପ୍ତ ନ ହେବାରୁ ବୃଦ୍ଧର ଅନ୍ତରରେ ଅସୀମ ଆଲୋଡନ ସୃଷ୍ଟି ହୁଏ ଏବଂ ସେ ଅକଥନୀୟ ଦୁଃଖ ଯନ୍ତ୍ରଣାରେ ଜର୍ଜରିତ ହୁଏ। ତେଣୁ ଲେଖକ ଏହିସବୁ ବିଷୟରେ ଉଦାହରଣ ଦେଇ ଆମ୍ଭମାନଙ୍କୁ ସତର୍କ କରାଇ ଦେଉଅଛନ୍ତି ଯେ, ଯୌବନାବସ୍ଥାରୁ ମଧ୍ୟ ଇନ୍ଦ୍ରିୟମାନଙ୍କୁ ସଂଯମ କରି ଚାଲିଲେ ସଂଯମର ଅଭ୍ୟାସ ବଢ଼ିଯାଇଥାଏ, ଯଦ୍ଦ୍ୱାରା ବାସନାଗୁଡିକ ମଧ୍ୟ ସଂଯତ ହୋଇ ଯାଇଥାନ୍ତି। ପରିଣାମରେ ବୃଦ୍ଧ ବୟସ ଆସିଲା ବେଳକୁ ସଂଯମୀ ମନ ବିଚଳିତ ନ ହୋଇ ସ୍ଥିର ରହେ। ତାହା ଫଳରେ ଶାନ୍ତି ମିଳେ।

ବୟସ କ୍ଷୟ ହେବା ସଙ୍ଗେ ସଙ୍ଗେ ବାସନା ବଢ଼ି ବଢ଼ି ଚାଲିଥାଏ। ଆଉ ଦୁର୍ବଳ ଶରୀର ସେ ବାସନାକୁ ଚରିତାର୍ଥ କରି ନ ପାରି ଅଶେଷ ମାନସିକ ଯନ୍ତ୍ରଣା ଭୋଗକରେ। ବାସନା ସକଳ ଉପଭୋଗ କରିବା ନିମିତ୍ତ ଶରୀରର ଶକ୍ତି ନ ଥିଲା ବେଳେ ମନରେ ଅସରନ୍ତି ବାସନା ଜାତ ହୋଇ ଶରୀରକୁ ଆହୁରି ଯନ୍ତ୍ରଣା ଦେଉଥାଏ।

ଏହି ଶ୍ଳୋକରେ ଯୁବକ କିପରି ବାର୍ଦ୍ଧକ୍ୟ ଆଡକୁ ମାଡିଚାଲିଛି, ତାହା ଅତି ଚମତ୍କାର ଭାବରେ ବର୍ଣ୍ଣନା କରାଯାଇଛି। ମଣିଷ ଶରୀରରେ ଯେପରି ଭାବେ ବୟସ ପଦଯାତ୍ରା କରିଚାଲିଛି, ତାହା ସହିତ କ୍ରମରକ୍ଷା କରି ଏହି ଶ୍ଳୋକଟିରେ ପାଦ ଓ ଶବ୍ଦଗୁଡିକ ଅତି ଚତୁରତାର ସହିତ ସଂଯୋଜନା କରାଯାଇଛି। ପ୍ରଥମେ ଶରୀର ଦୁର୍ବଳ ହୋଇ ଉଠୁଛି, ମୁଣ୍ଡର ବାଳ ଧଳା ହୋଇଯାଉଛି, ଦାନ୍ତ ଧୀରେ ଧୀରେ ଖସି ପଡୁଅଛି। ଶରୀରକୁ ସିଧାସଳଖ ଭାବରେ ଧରିବା ପାଇଁ ମେରୁଦଣ୍ଡର ଶକ୍ତି ପାଉନାହିଁ। ଫଳରେ ମଣିଷ ବାଡିର ସାହାଯ୍ୟ ନେଉଛି। ବାଡି ଉପରେ ଭରାଦେଇ ଗୋଡ ଘୋଷାରି ମଣିଷ ଆଗେଇ ଚାଲୁଛି। କି ହୃଦୟ ବିଦାରକ ଦୃଶ୍ୟ, କି ଯନ୍ତ୍ରଣାଦାୟକ ସେ ସ୍ଥିତି।

ତଥାପି ବାସନା ସକଳରୁ ତ୍ରାହି ପାଇବା ନିମିତ୍ତ ରାସ୍ତା ନାହିଁ। ଶରୀର ଶ୍ମଶାନକୁ ଯିବା ନିମିତ୍ତ ଯେତିକି ବେଗରେ ଆଗଉ ଥାଏ ବାସନା ସକଳ ତାର ଦ୍ୱିଗୁଣିତ ବେଗରେ ଆଗଉ ଥାଆନ୍ତି। ଏହା ହିଁ ମାୟା, ଏହା ହିଁ ମୋହ। ଏହି ଶ୍ଳୋକଟିକୁ ଲେଖିଥିଲେ ଶ୍ରୀ ତୋଟକାଚାର୍ଯ୍ୟ।

**ଅଗ୍ରେ ବହ୍ନିଃ ପୃଷ୍ଠେ ଭାନୁଃ**

**ରାତ୍ରୌ ଚୁବୁକସମର୍ପିତଜାନୁଃ।**

**କରତଲଭିକ୍ଷସ୍ତରୁତଲବାସଃ**

**ତଦପି ନ ମୁଞ୍ଚତ୍ୟାଶାପାଶଃ ॥୧୬॥**

**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

ଅଗ୍ରେ = ସମ୍ମୁଖରେ, ବହ୍ନି = ଅଗ୍ନି, ପୃଷ୍ଠେ = ପଛରେ, ଭାନୁଃ = ସୂର୍ଯ୍ୟ, ରାତ୍ରୌ = ରାତିରେ, ଚୁବୁକ-ସମର୍ପିତ-ଜାନୁଃ = ଦୁଇ ଆଣ୍ଠୁରେ ଚିବୁକକୁ ଧରି ରଖିବା, କରତଲ ଭିକ୍ଷଃ = ଭିକ୍ଷା ତା ନିଜ ହାତରେ ନେବା, ତରୁତଲବାସଃ = ଗଛ ମୂଳରେ ବାସ କରିବା, ତଦପି = ତଥାପି, ନ = ନାହିଁ, ମୁଞ୍ଚତି = ତ୍ୟାଗ କରେ, ଆଶାପାଶଃ = ଆଶାରୂପକ ଫାଶ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ।

*୧୬. (କୌଣସି ଏକ ସନ୍ନ୍ୟାସୀ) ସମ୍ମୁଖରେ ନିଆଁଜାଳି, ସୂର୍ଯ୍ୟଙ୍କ ଆଡକୁ ପଛକରି, ରାତିରେ ଦୁଇ ଆଣ୍ଠୁ ସନ୍ଧିରେ ମୁହଁକୁ ରଖି, କେବଳ ନିଜର ଆଞ୍ଜୁଳାରେ ଭିକ୍ଷା ଗ୍ରହଣ କରି ଏବଂ ଗଛତଳେ ବାସକରି ଜୀବନ ବିତାଉଛି, କିନ୍ତୁ ଏପରି ଅବସ୍ଥାରେ ଜୀବନ କଟାଇଲେ ମଧ୍ୟ ଆଶା ବନ୍ଧନରୁ ମୁକ୍ତିଲାଭ କରିପାରୁ ନାହିଁ।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ଗୃହୀ ନିଜର କାମନା ବାସନା ଦ୍ୱାରା କିପରି ଭାବେ ଜଳିପୋଡି ମରୁଛି ତାହା ପୂର୍ବ ଶ୍ଳୋକରେ ବିସ୍ତାରିତ ଭାବରେ ବର୍ଣ୍ଣନା କରାଯାଇଛି। ଏଥି ସଙ୍ଗେ ସଙ୍ଗେ ଚିନ୍ତାଶୀଳ ମାନବ ସମାଜକୁ ମଧ୍ୟ ଚେତେଇ ଦିଆଯାଇଛି ଯେ କିପରି ଜଣେ ଘରଛଡା ସଂସାରୀ କାମନା ଜଞ୍ଜାଳରେ ପଡି ହନ୍ତସନ୍ତ ହେଉଛି। ତାହାହେଲେ ଘରଛଡା ସନ୍ନ୍ୟାସୀମାନେ କ'ଣ ଏହି ପ୍ରକାର କାମନା ଜଞ୍ଜାଳରୁ ମୁକ୍ତିଲାଭ କରିଥାଆନ୍ତି? ବାସନା ଜଞ୍ଜାଳ ସାର୍ବଜନୀନ। ଏହା ହିଁ ପ୍ରକୃତିର ନିୟମ। ବିଜ୍ଞାନର ନିୟମ ଯେପରି ସାର୍ବଜନୀନ; ସେହିପରି ବାସନା ଜଞ୍ଜାଳ କାହାରିକୁ ଦୟା ଦେଖାଇ ନାହିଁ। ବାସନା କୁହୁକ ସମସ୍ତଙ୍କୁ ମୋହିତ କରିଛି।

ଏହି ଶ୍ଳୋକରେ ଏକ ଗୃହତ୍ୟାଗୀ ସନ୍ନ୍ୟାସୀର ଉଦାହରଣ ଦେଇ ବାସନା ଜଞ୍ଜାଳକୁ ଉପଯୁକ୍ତ ଭାବରେ ବୁଝାଇ ଦିଆଯାଇଛି। ସନ୍ନ୍ୟାସୀ ଜଣକ ଘରସଂସାର ସୁଖସ୍ୱାଚ୍ଛନ୍ଦ୍ୟକୁ ତ୍ୟାଗକରି ସୁଷମ ଖାଦ୍ୟ, ପୋଷାକ ପରିତ୍ୟାଗ କରି ବଣ ଜଙ୍ଗଲରେ ଖରାତରାରେ ଘୁରି ବୁଲୁଛନ୍ତି। କିନ୍ତୁ ଯେତେବେଳେ ବର୍ଷା ଆସୁଛି ନିଜର ଶରୀରକୁ ଢ଼ାଙ୍କିବା ନିମିତ୍ତ ଆଶ୍ରୟ ଖୋଜି ବୁଲୁଛନ୍ତି। ଶୀତ ଲାଗିଲେ ଧୂନିଜାଳି ନିଆଁ ପୁଉଁଛନ୍ତି। ଶୀତ ଦିନରେ ଖରାକୁ ଆସି ଖରା ପୁଉଁଛନ୍ତି। ପୁଣି ଯେତେବେଳେ ଖରା ବା ନିଆଁ ନାହିଁ, ସେତେବେଳେ ଦୁଇ ଗୋଡକୁ ଜାକିଜୁକି ତାହାରି ଭିତରେ ମୁଣ୍ଡଗୁଞ୍ଜି ନିଜକୁ ଗରମ ରଖିବାକୁ ଚେଷ୍ଟା କରୁଛନ୍ତି। ନିଜର ବଂଚିରହିବା ପାଇଁ କୌଣସି ଖାଦ୍ୟ ସାମଗ୍ରୀ ନ ରଖିଥିଲେ ମଧ୍ୟ ଅନ୍ୟମାନଙ୍କର ଦାନକୁ ହାତପାତି ନେଉଛନ୍ତି। ବାସଗୃହ ଛାଡିଥିଲେ ମଧ୍ୟ ଗଛମୂଳେ ଆଶ୍ରୟ ନେଉଛନ୍ତି।

ସନ୍ନ୍ୟାସୀ ହେବା ନିମିତ୍ତ ଘରଦ୍ୱାର ପୁତ୍ରକନ୍ୟା ସୁଖସମ୍ଭୋଗ ସବୁ ତ୍ୟାଗକରି ମଧ୍ୟ ନିଜକୁ ବଞ୍ଚେଇ ରଖିବା ନିମିତ୍ତ ବାସନା ସକଳକୁ ଛାଡିପାରି ନାହାନ୍ତି। ତେଣୁ କୁହାଯାଉଛି "ତଦପିନ ମୁଞ୍ଚତ୍ୟାଶାପାଶଃ"।

ଆଚାର୍ଯ୍ୟ ଶଙ୍କର ତଥାକଥିତ ସନ୍ନ୍ୟାସୀର ଜୀବନକୁ ଉପରୋକ୍ତ ଭାବରେ ବର୍ଣ୍ଣନା କରି ସେହି ପ୍ରକାର ସନ୍ନ୍ୟାସୀମାନଙ୍କୁ ଉପହାସ କରିଛନ୍ତି। ସନ୍ନ୍ୟାସୀର ବେଶଭୂଷା ଓ ବାହ୍ୟ ଆଡମ୍ବର ଯେତେ ତ୍ୟାଗମୂଳକ ହେଉନା କାହିଁକି ସେଥିରେ ସନ୍ନ୍ୟାସୀ ଭାବର ପୂର୍ଣ୍ଣତା ଲାଭ ହୁଏନାହିଁ। ସଂସାରର ବିଷୟବସ୍ତୁକୁ ତ୍ୟାଗ କରିବାର ଅର୍ଥ ପ୍ରକୃତ ତ୍ୟାଗ ନୁହେଁ। କିନ୍ତୁ ବିଷୟବସ୍ତୁ ପ୍ରତି କାମନା ତ୍ୟାଗ ହିଁ ପ୍ରକୃତରେ ତ୍ୟାଗ ଅଟେ। ଏହି କାମନାକୁ ତ୍ୟାଗ କରି ପାରିଲେ ଆମର ମନବୁଦ୍ଧି ପବିତ୍ର ହୁଏ। ବିଷୟବସ୍ତୁକୁ ତ୍ୟାଗ କରିବା ବା ଇନ୍ଦ୍ରିୟ ସବୁକୁ ଜୋର କରି ସଂଯତ କରାଇବା ସନ୍ନ୍ୟାସ ଜୀବନର ଅୟମାରମ୍ଭ ମାତ୍ର। କିନ୍ତୁ ମନରୁ ବାସନା ତ୍ୟାଗ କରିବା ଚରମ ଲକ୍ଷ୍ୟ ଅଟେ। ଆତ୍ମବୋଧରେ ଶିଷ୍ୟମାନଙ୍କୁ ଉପଦେଶ ଛଳରେ ଆଚାର୍ଯ୍ୟ ଶଙ୍କର ବାହାରର ବିଷୟବସ୍ତୁ ସକଳରୁ ସୁଖଭୋଗର କାମନାକୁ ତ୍ୟାଗ କରିବା ନିମିତ୍ତ ଉପଦେଶ ଦେଇଛନ୍ତି ଯଥା- "ବାହ୍ୟ-ଅନିତ୍ୟ-ସୁଖ-ଆସକ୍ତିଂ-ହିତ୍ୱା"(ଆତ୍ମବୋଧ-୫୧)

ମନ ଶୁଦ୍ଧପୂତ ନ ହେଲେ କେବଳ ବିଷୟବସ୍ତୁର ଭୋଗରୁ ଇନ୍ଦ୍ରିୟ ନିଗ୍ରହ ଦ୍ୱାରା ବିଶେଷ କୌଣସି ଫଳ ଲାଭ ହୁଏନାହିଁ। ପୁରାଣମାନଙ୍କରେ ରାକ୍ଷସମାନଙ୍କର ଇନ୍ଦ୍ରିୟନିଗ୍ରହ ଜନିତ କଠୋର ତପସ୍ୟା ଓ ତହିଁର ଫଳାଫଳ ଇତ୍ୟାଦିର ଉଦାହରଣ ଆମେ ପାଇପାରିବା। ସେହି ତପସ୍ୟା ଫଳରେ ସର୍ବଶେଷରେ ନିଜର ବାସନା କାମନା ଦ୍ୱାରା ରାକ୍ଷସ କୁଳ ଯେ ଧ୍ୱଂସ ହୁଅନ୍ତି ତାହା ଆମେ ସମସ୍ତେ ଜାଣୁ।

ଯେଉଁ ଲୋକମାନେ ବାହାରେ ସନ୍ନ୍ୟାସର ଭେକଧରି ଅନ୍ତର ଭିତରେ ଅହରହ ଇନ୍ଦ୍ରିୟ ଲାଳସାକୁ ପରିତୃପ୍ତ କରିବା ପାଇଁ ସବୁବେଳେ ଲାଗିପଡିଥାନ୍ତି ସେମାନଙ୍କୁ ଗୀତାଚାର୍ଯ୍ୟ ତୃତୀୟ ଅଧ୍ୟାୟ ଷଷ୍ଠ ଶ୍ଲୋକରେ ଯଥାଯଥ ଭାବରେ କହିଛନ୍ତି, "ମିଥ୍ୟାଚାରଃ ସ ଉଚ୍ୟତେ" ଅର୍ଥାତ୍ ତାଙ୍କୁ ଭଣ୍ଡ ସନ୍ନ୍ୟାସୀ କହନ୍ତି । ତେଣୁ ଶାରୀରିକ ଇନ୍ଦ୍ରିୟ ସଂଯମ ପୂର୍ଣ୍ଣ ଭାବରେ ଉପଯୁକ୍ତ ଫଳ ଦିଏ ନାହିଁ । ଶାରୀରିକ ଇନ୍ଦ୍ରିୟ ସଂଯମ ଦ୍ୱାରା ଯତ୍କିଞ୍ଚିତ୍ ଫଳ ମିଳିଲେ ମଧ୍ୟ ତାହା ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ନିମିତ୍ତ ସାହାଯ୍ୟ ନ କରି କ୍ଷତି କରାଇଥାଏ । ତେଣୁ ମାନସିକ ଓ ଶାରୀରିକ ସଂଯମ ଦ୍ୱାରା ଉପାର୍ଜିତ ଶକ୍ତିକୁ ଆତ୍ମ ଅନୁସନ୍ଧାନରେ ଲଗାଇପାରିଲେ ଆତ୍ମ ଅନୁଭୂତି ଲାଭ କରିବାରେ ସହାୟକ ହୁଏ । ତେଣୁ ଇନ୍ଦ୍ରିୟ ନିରୁଦ୍ଧ କ୍ଷତିକାରକ । ଇନ୍ଦ୍ରିୟ ସକଳକୁ ନିରୁଦ୍ଧ ନ କରି ଉପଯୁକ୍ତ ପନ୍ଥାରେ ନିୟୋଜିତ କରିବା ଅତ୍ୟନ୍ତ ଲାଭଜନକ ।

ଏହି ଶ୍ଲୋକଟିକୁ ଆଚାର୍ଯ୍ୟଙ୍କର ଅନ୍ୟ ଏକ ଶିଷ୍ୟ ହସ୍ତାମଳକ ଲେଖିଛନ୍ତି ।

**କୁରୁତେ ଗଙ୍ଗାସାଗରଗମନଂ**
**ବ୍ରତପରିପାଳନମଥବା ଦାନମ୍ ।**
**ଜ୍ଞାନବିହୀନଃ ସର୍ବମତେନ**
**ଭଜତି ନ ମୁକ୍ତିଂ ଜନ୍ମଶତେନ ॥୧୭॥**
**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

କୁରୁତେ = ତୀର୍ଥ ଯାତ୍ରାରେ ଯାଏ, ଗଙ୍ଗା ସାଗର-ଗମନଂ = ଯେଉଁଠାରେ ଗଙ୍ଗାନଦୀ ସମୁଦ୍ରରେ ମିଶିଛି, ବ୍ରତପରିପାଳନଂ = ବ୍ରତପାଳନ କରେ, ଅଥବା = ଅବା, ଦାନମ୍ କୁରୁତେ = ଦାନକରେ, ଜ୍ଞାନ-ବିହୀନଃ = ସତ୍ୟ ସମ୍ବନ୍ଧରେ ଅନୁଭୂତି ନ ହେଲେ ବା ଜ୍ଞାନ ବ୍ୟତିରେକେ, ସର୍ବମତେନ = ସମସ୍ତ ମତ ଅନୁସାରେ, ମୁକ୍ତିଂ = ମୁକ୍ତି, ନ = ନାହିଁ, ଭଜତି = ଲାଭହେବ, ଜନ୍ମଶତେନ = ଶତଜନ୍ମ ହେଲେ ମଧ୍ୟ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ ।

*୧୭. ଜଣେ ଗଙ୍ଗା ଓ ସାଗରର ମିଳନ ସ୍ଥଳକୁ ତୀର୍ଥ କରିବାକୁ ଯାଏ କିମ୍ବା ବ୍ରତ ଉପବାସ କରେ ଅଥବା ଦାନଧ୍ୟାନ କରେ; ସତ୍ୟର ଅନୁଭୂତି ନ ଥିଲେ ଶତଜନ୍ମ ଏହି ପ୍ରକାରରେ ତୀର୍ଥଯାତ୍ରା, ଦାନ, ବ୍ରତ ଇତ୍ୟାଦି କଲେ ମଧ୍ୟ କେବେହେଲେ ମୁକ୍ତି ମିଳିବ ନାହିଁ । ଜଗତର ସମସ୍ତ ଜ୍ଞାନୀମାନଙ୍କର ଏହି ମତ ।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ହସ୍ତାମଳକ ପୂର୍ବ ଶ୍ଳୋକରେ କଠୋର ଭାବେ ଜପତପର ତ୍ରୁଟିପୂର୍ଣ୍ଣ ଆଚରଣ ବିଷୟରେ ସମାଲୋଚନା କରିଛନ୍ତି। ଶ୍ରୀ ସୁବୋଧ ଏହି ଶ୍ଳୋକରେ ହସ୍ତାମଳକଙ୍କର ଚିନ୍ତାଧାରା ଉପରେ ଅଧିକ ଆଲୋକପାତ କରି ଅଛନ୍ତି। ସାଧକମାନେ ଧର୍ମ କରିବାକୁ ଯାଇ ତୀର୍ଥଯାତ୍ରା, ବ୍ରତ ପାଳନ ଓ ଦାନଧ୍ୟାନ କରନ୍ତି। ଏଗୁଡିକ ମନକୁ ପବିତ୍ର ଓ ଏକନିଷ୍ଠ ହୋଇ ଧ୍ୟାନ କରିବା ନିମିତ୍ତ ସାହାଯ୍ୟ କରିଥାଆନ୍ତି। କିନ୍ତୁ ଜଣେ ଗୃହୀ ପକ୍ଷରେ ତ ଧ୍ୟାନ ଅସମ୍ଭବ, କାରଣ ଆତ୍ମାନୁଭୂତି (ଜ୍ଞାନ) ପାଇଁ ତା'ର ସମୟ ନାହିଁ। ତେଣୁ ଶ୍ରୀ ସୁବୋଧ ସାଧକମାନଙ୍କର ବା ଗୃହୀମାନଙ୍କର ଭ୍ରାନ୍ତ ଧାରଣାକୁ ଉପହାସ କରି ନିମ୍ନଲିଖିତ ମତେ ନିଜର ଭାବ ବ୍ୟକ୍ତ କରିଅଛନ୍ତି।

ଆତ୍ମବୋଧରେ ଲେଖାଅଛି- "ବୋଧୋଽନ୍ୟସାଧନେଭ୍ୟୋ ହି ସାକ୍ଷାତମୋକ୍ଷୈକ ସାଧନମ୍" (ଆତ୍ମବୋଧ-୨) ଅର୍ଥାତ୍ ଜ୍ଞାନବ୍ୟତିରେକେ ମୁକ୍ତିଲାଭ ଅସମ୍ଭବ। 'ଜ୍ଞାନେନ ଏବତୁକୈବଲ୍ୟମ୍'- ଅର୍ଥାତ୍ ବ୍ରହ୍ମ ଏକତ୍ୱ ଅନୁଭୂତି ବିନା ଜୀବନରେ ମୁକ୍ତି ଅସମ୍ଭବ।ଏକଥା ଉପନିଷଦ ମଧ୍ୟ ପରିଷ୍କାର ଭାବରେ କହୁଅଛି। ତେଣୁ ବ୍ରହ୍ମ ଏକ, ଏହି ଅନୁଭୂତି ନ ଆସିଲେ ଜୀବନରେ ମୁକ୍ତି ହୋଇପାରିବ ନାହିଁ ବୋଲି ମନୀଷୀଗଣ ଯେ ଏକମତ ଏହା ଶ୍ରୀ ସୁବୋଧ ଦର୍ଶାଇଅଛନ୍ତି। ତେଣୁ ଆଚାର୍ଯ୍ୟ ଶଙ୍କର ଏଥିରେ ଦୃଢ଼ ନିଶ୍ଚିତ ଯେ ଶତଶତ ଜନ୍ମ ଯେତେ ଭଲକାମ କଲେ ମଧ୍ୟ ଆତ୍ମଜ୍ଞାନ ବିନା ମୁକ୍ତିଲାଭ ହୋଇପାରିବ ନାହିଁ।

ଯେଉଁଠାରେ ଗଙ୍ଗାନଦୀ ବଙ୍ଗୋପସାଗର ସହ ମିଳିଅଛି ସେହି ସ୍ଥାନକୁ ଗଙ୍ଗାସାଗର କୁହାଯାଏ। ଏହାର ଆଉ ଏକ ଅର୍ଥ ମଧ୍ୟ କରାଯାଇପାରେ। ଯଥା- ଗଙ୍ଗା ଏବଂ ସାଗର। ଗଙ୍ଗା କହିଲେ ଗଙ୍ଗାନଦୀ ଯେଉଁଠାରେ ପ୍ରବାହିତ ହେଉଅଛି ସେଠାକୁ ତୀର୍ଥ କରିଯିବା ଅର୍ଥାତ୍ କାଶୀଧାମକୁ ତୀର୍ଥ କରିଯିବା। ସାଗର ଅର୍ଥ- ରାମେଶ୍ୱର ସେତୁବନ୍ଧ, ଯେଉଁଠାରେ ସମୁଦ୍ରରେ ସ୍ନାନ କରାଯାଏ। ସୁତରାଂ କାଶୀ ଏବଂ ରାମେଶ୍ୱରକୁ ତୀର୍ଥ କରିଗଲେ ମଣିଷର ବହୁ ତ୍ୟାଗ, ବହୁ ଭକ୍ତି, ଧୈର୍ଯ୍ୟ ସାହସ ଲୋଡା ହୁଏ। ମଣିଷ ତାକୁ ଅତି ବିଶ୍ୱାସର ସହିତ ପାଳନ କରେ। ପାଦରେ ଚାଲି ଚାଲି ଏସବୁ ତୀର୍ଥଯାତ୍ରା କରାଯାଏ। ଏହି ତୀର୍ଥଯାତ୍ରା ଦ୍ୱାରା ବହୁ ଅନୁଭୂତି ଅର୍ଜନ କରାଯାଏ।

ବ୍ରତ ମାଧ୍ୟମରେ ମହତ ଆଦର୍ଶ ସମ୍ବନ୍ଧରେ ନିଷ୍ପତ୍ତି ନେବା, ସେହି ନିଷ୍ପତ୍ତି ଅନୁଯାୟୀ ମନକୁ କାମରେ ଲଗାଇବା, ସେହି କାମକୁ ଅତି ନିଷ୍ଠାର ସହିତ କରିବା ଇତ୍ୟାଦି ଲାଭ ମିଳିଥାଏ। ଦୃଢ ଇଚ୍ଛା ଯୋଗୁଁ ଆମର ବିକ୍ଷିପ୍ତ ମନ ଇନ୍ଦ୍ରିୟାସକ୍ତ ବିଷୟବସ୍ତୁ ସକଳରୁ ନିଜକୁ ଦୂରେଇ ଶାନ୍ତ ହୋଇ ରହେ। ଏହିପରି ଭାବରେ ଯେତେବେଳେ ଈଶ୍ୱରଙ୍କ

ନିମିତ୍ତ ନିଃସ୍ୱାର୍ଥପର ଭାବରେ ସମସ୍ତ କାମ କରାଯାଏ, ତାହାକୁ ହିଁ ପ୍ରକୃତରେ ବ୍ରତ କୁହାଯାଏ। ଏହି ବ୍ରତ ଧର୍ମମୂଳକ ଅଟେ।

ଯେତେ ସୁନ୍ଦର ଭାବରେ ଖାଦ୍ୟପଦାର୍ଥକୁ ରନ୍ଧାରନ୍ଧି କଲେ ମଧ୍ୟ ତାକୁ ଉଦରସାତ୍ ନ କରିବା ପର୍ଯ୍ୟନ୍ତ ଆମର କ୍ଷୁଧା ଜନିତ ଦୁଃଖ ଦୂର ହୁଏ ନାହିଁ। ତେଣୁ ବ୍ରତ, ତୀର୍ଥଯାତ୍ରା, ଦାନ ଇତ୍ୟାଦି ଯାହାସବୁ କରାଯାଏ, ସେସବୁ ସାଧକର ମନକୁ ଧ୍ୟାନ କରିବା ନିମିତ୍ତ ପ୍ରସ୍ତୁତ କରେ। କେବଳ ଧ୍ୟାନ ମାଧ୍ୟମରେ ଜ୍ଞାନଲାଭ କରାଯାଏ। ମନୁଷ୍ୟର ସ୍ୱାଭାବିକ ଦୋଷ ଦୁର୍ବଳତା ମାଧ୍ୟମରେ ବା ଇନ୍ଦ୍ରିୟାସକ୍ତ ମନବୁଦ୍ଧି ଦ୍ୱାରା ଶତଜନ୍ମ ଗଲେ ମଧ୍ୟ ମୁକ୍ତି ମିଳେ ନାହିଁ। ବେଦାନ୍ତ ଶାସ୍ତ୍ରରେ ପୁରାଣ ମନୀଷୀଗଣ ଯଥାର୍ଥରେ କହି ଅଛନ୍ତି, "ରଜ୍ଜୁରେ ସର୍ପଭ୍ରମ ଗାରୁଡି ମନ୍ତ୍ର ଦ୍ୱାରା ଦୂର ହୁଏନାହିଁ।" ସ୍ତମ୍ଭକୁ ଭୂତବୋଲି ଧରିନେଇ ଜଣେ ଭୟରେ ଥରହର ହେଉଥାଏ। କିନ୍ତୁ ଘଣ୍ଟା ବଜାଇ ଭୂତ ନିକଟକୁ ଦୌଡିଗଲେ ଭୂତର ପ୍ରକୃତ ସ୍ୱରୂପ ଖୁଣ୍ଟଟାଏ ବୋଲି ଜଣାପଡ଼େ।

ସ୍ୱପ୍ନ ଅବସ୍ଥାର ଯାବତୀୟ ଦୁଃଖ ଜାଗ୍ରତ ହେଲେ ଦୂର ହୋଇଯାଏ। ତେଣୁ ହେ ଜୀବଭାବାପନ୍ନ ମାନବ ! ଜାଗ୍ରତ ହୁଅ। ନିଜର ଆନନ୍ଦ ସ୍ୱରୂପକୁ ଅନୁଭବ କର। ତୁମେ ଏହି ପଞ୍ଚଭୂତ ଦେହ ନୁହଁ ଅବା ମନ-ବୁଦ୍ଧି ନୁହଁ। ତୁମେ ସେହି ପରମାତ୍ମା ସ୍ୱରୂପ- 'ତତ୍ତ୍ୱମସି'।

ଏହି ଶ୍ଳୋକଟି ଭକ୍ତ ଶ୍ରୀ ସୁବୋଧଙ୍କ ଦ୍ୱାରା ଲିଖିତ।

**ସୁରମନ୍ଦିରତରୁମୂଲନିବାସଃ**

**ଶଯ୍ୟା ଭୂତଲମଜିନଂ ବାସଃ ।**

**ସର୍ବପରିଗ୍ରହଭୋଗତ୍ୟାଗଃ**

**କସ୍ୟ ସୁଖଂ ନ କରୋତି ବିରାଗଃ ॥୧୮॥**

**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

ସୁର-ମନ୍ଦିର-ତରୁ-ମୂଲ-ନିବାସଃ = ଦେଉଳରେ କିମ୍ବା ଗଛ ମୂଳରେ ବାସ କରିବା, ଶଯ୍ୟା = ବିଛଣା, ଭୂତଲଂ = ଭୂମି, ଅଜିନଂ = ହରିଣ ଛାଲ, ବାସଃ = ବସ୍ତ୍ର, ସର୍ବ-ପରିଗ୍ରହ = ସମସ୍ତ ବିଷୟବସ୍ତୁକୁ ଲୋଭ ବଶତଃ ସଂଗ୍ରହ କରିବା, ଭୋଗଃ = ସେହି ବିଷୟବସ୍ତୁକୁ ଉପଭୋଗ କରିବାର ଯେଉଁ ତୃଷ୍ଣା, ତ୍ୟାଗଃ = ତ୍ୟାଗକରି, କସ୍ୟ = କାହାର, ସୁଖଂ = ସୁଖକୁ, ନ = ନାହିଁ, କରୋତି = ଉପଭୋଗ ନକରେ, ବିରାଗଃ = ବୈରାଗ୍ୟ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ ।

*୧୮. ଦେଉଳରେ ରହି, ଗଛମୂଳେ ବା ଭୂମିରେ ଶୋଇ, ହରିଣ ଚମଡା ପିନ୍ଧି ଅର୍ଥାତ୍ ମଣିଷର ସବୁପ୍ରକାର ସୁଖସମ୍ଭୋଗ ବସ୍ତୁକୁ ଓ ସେମାନଙ୍କର ଉପଭୋଗ ରୂପକ ବାସନାକୁ ଯେ ତ୍ୟାଗ କରିଛି, ସେହି ପ୍ରକାର ବୈରାଗୀ କାହାର ସୁଖକୁ ଆସ୍ୱାଦନ ନ କରେ ?(ଅର୍ଥାତ୍ ପ୍ରକୃତ ବୈରାଗୀ ହିଁ ସମସ୍ତ ସୁଖ ଉପଭୋଗ କରେ) ।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ଷୋଡ଼ଶ ଶ୍ଳୋକରେ ହସ୍ତାମଲକ ଏକ ଆତ୍ମପ୍ରତାରକର ନିଖୁଣ ସ୍ୱରୂପ ଚିତ୍ରଣ କରିଥିଲେ । ଏହି ଶ୍ଳୋକରେ ଶ୍ରୀ ସୁରେଶ୍ୱରାଚାର୍ଯ୍ୟ ଜଣେ ପ୍ରକୃତ ତ୍ୟାଗୀ ବିଷୟରେ ବର୍ଣ୍ଣନା କରିଅଛନ୍ତି । ତ୍ୟାଗୀର ବିଷୟବସ୍ତୁ ପ୍ରତି ମମତା ନାହିଁ କିମ୍ବା ସେସବୁ ଉପଭୋଗ କରିବା ନିମିତ୍ତ ତାର ବାସନା ମଧ୍ୟ ନାହିଁ । ପ୍ରକୃତ ବୈରାଗ୍ୟ ସମସ୍ତଙ୍କୁ ସୁଖ ଦିଏ । ରାଜା ରାଜ୍ୟ ଚାଲିଯିବା ଭୟରେ ଥରହର, ଧନୀ ଧନ ହାନି ନିମିତ୍ତ ହରବର, ଶକ୍ତିଶାଳୀ ଲୋକ ନିଜ ଅପେକ୍ଷା ଅଧିକ ଶକ୍ତିଶାଳୀ ଲୋକର ଶକ୍ତିରେ ଈର୍ଷାନ୍ୱିତ । ଏହା ଆମେ ପ୍ରତ୍ୟହ ଦୁନିଆଁରେ ଦେଖିବାକୁ ପାଉ । ମୋଟ ଉପରେ ଜଗତରେ ସମସ୍ତେ ଦୁଃଖୀ ।

ପ୍ରତ୍ୟେକ ଲୋକ ନିଜକୁ ଅନ୍ୟ ଲୋକ ସହିତ ତୁଳନା କରେ ଓ ଅନ୍ୟ ଲୋକକୁ ନିଜଠାରୁ ସୁଖୀ ବୋଲି ଭାବେ । କିନ୍ତୁ ସେହି ଲୋକଟି ପ୍ରକୃତରେ ସୁଖୀ, ଯେଉଁଲୋକ ନିଜର ଅନ୍ତର ଭିତରେ ବାସନା ଓ କାମନାକୁ ଦୂର କରିପାରିଛି । ଯେଉଁ ଲୋକ ଏହି

ପରିବର୍ତ୍ତନଶୀଳ ସଂସାରର ମାୟାମୟ-ଅସ୍ଥାୟୀ, ସୀମିତ ସୁଖକୁ ଚାହେଁ ନାହିଁ, ସେ ହିଁ ପ୍ରକୃତରେ ଧନୀ ବା ସୁଖୀ। ସେହି ହିଁ ରାଜାଧିରାଜ।

ସେହି ପ୍ରକାର ଲୋକର ଗଛତଳ ବା ମନ୍ଦିରରେ ଆଶ୍ରୟ ନେବା ବ୍ୟତୀତ ଆଉ କୌଣସି ଗୃହ ବା ଆଶ୍ରୟସ୍ଥଳ ନ ଥାଇପାରେ। ସେ ଦେଉଳରେ କିମ୍ବା ଗଛମୂଳେ ବିନା ବିଛଣାରେ ପୁଙ୍ଗୁଳା ଦେହରେ ଶୋଇପାରେ। ତାହାର ହରିଣ ଛାଲ ବ୍ୟତୀତ ଅନ୍ୟ କୌଣସି ପୋଷାକ ନ ଥାଇପାରେ। ସଂସାରର ଯାବତୀୟ ଉପଭୋଗ୍ୟ ବିଷୟବସ୍ତୁକୁ ତ୍ୟାଗକରି ସେ ଆନନ୍ଦରେ ଜଗତରେ ଦିନ କାଟୁଥାଏ। କାରଣ ସେ ନିଜେ ହିଁ ପରିପୂର୍ଣ୍ଣ। ସେ ବାହାର ଦୁନିଆର ଆକର୍ଷଣରୁ ସମ୍ପୂର୍ଣ୍ଣ ଭାବେ ମୁକ୍ତ ବା ସ୍ୱାଧୀନ। ସେ ନିଜ ଅନ୍ତରସ୍ଥ ଆନନ୍ଦରୂପକ ଅସରନ୍ତି ଧନରେ ଧନୀ। ଆତ୍ମସନ୍ତୋଷରେ ସେ ସନ୍ତୁଷ୍ଟ। ଏହିପରି ମାନସିକ ଅବସ୍ଥାରେ କିଏ ବା ସୁଖୀ ନ ହେବ? ବାହାରର ବିଷୟବସ୍ତୁକୁ ତ୍ୟାଗକରି ଅନ୍ତର ଭିତରେ ସେମାନଙ୍କ ପ୍ରତି ଆସକ୍ତି ରଖି କେହି କେବେହେଲେ ପ୍ରକୃତ ସୁଖ ଉପଭୋଗ କରିପାରେ ନାହିଁ। ଏହା ଆଗରୁ ବର୍ଣ୍ଣନା କରାଯାଇଛି। ତ୍ୟାଗ ଓ ତପସ୍ୟା ଜନିତ ସୁଖ ସଙ୍ଗେ ଆଉ କୌଣସି ସୁଖ ସମକକ୍ଷ ହୋଇପାରେ ବୋଲି ସଂଦେହ ବି କରାଯାଇପାରେ; କିନ୍ତୁ ଏହା ସତ୍ୟ ନୁହେଁ। ଏପରି ଭାବରେ ସିଦ୍ଧାନ୍ତ ନେଲେ ଶାସ୍ତ୍ରାନୁମୋଦିତ ସିଦ୍ଧାନ୍ତର ବିରୁଦ୍ଧରେ ଯିବ। ତେଣୁ ଏହିଠାରେ ପ୍ରକୃତ ସନ୍ନ୍ୟାସୀର ଜୀବନରେ ଭିତର ଓ ବାହାରର ବ୍ୟବହାର ବର୍ଣ୍ଣନା କରାଯାଇଛି। ସେହି ସନ୍ନ୍ୟାସୀ ନିଜର ଅନ୍ତର୍ନିହିତ ପରିପୂର୍ଣ୍ଣତାରେ ତୃପ୍ତହୋଇ ବାହାରର ବିଷୟବସ୍ତୁରେ ବାସନାଶୂନ୍ୟ ହୋଇଥାଆନ୍ତି। ବାହାରର ବିଷୟବସ୍ତୁ ପ୍ରତି ତାଙ୍କର କୌଣସି ଘୃଣା ନ ଥାଏ। କିନ୍ତୁ ସେସବୁ ସେ ଆଦୌ ଦରକାର କରନ୍ତି ନାହିଁ। ଏହି ଭାବକୁ ଗୀତାର ଦ୍ୱିତୀୟ ଅଧ୍ୟାୟର ୫୫ଶ୍ଳୋକରେ ସ୍ଥିତପ୍ରଜ୍ଞଙ୍କର ସ୍ୱଭାବ ବର୍ଣ୍ଣନାରେ ସୁନ୍ଦର ଭାବରେ ବ୍ୟକ୍ତ କରାଯାଇଛି।

"ପ୍ରଜହାତି ଯଦା କାମାନ୍ ସର୍ବାନ୍ ପାର୍ଥ ମନୋଗତାନ୍।
ଆତ୍ମନ୍ୟେବାତ୍ମନା ତୁଷ୍ଟଃ ସ୍ଥିତପ୍ରଜ୍ଞସ୍ତଦୋଚ୍ୟତେ ॥"

ବହିଃ ବସ୍ତୁରେ ଆଗ୍ରହଶୂନ୍ୟତା ଅନ୍ତରର ପରିପୂର୍ଣ୍ଣତାର ଲକ୍ଷଣ। ତା ନ ହେଲେ ବହିଃବସ୍ତୁର ତ୍ୟାଗ ଦୁଃଖଦାୟକ ହୁଅନ୍ତା। ତେଣୁ ସାଧକ ସର୍ବଦା ଅନ୍ତର୍ଦୃଷ୍ଟିର ସହିତ ବାହାରର ବିଷୟବସ୍ତୁକୁ ବିଚାର କରିବା ଉଚିତ୍। ଅନ୍ତର୍ଦୃଷ୍ଟି ବ୍ୟତିରେକେ ସାଧକ କେବେହେଲେ ଆକର୍ଷଣୀୟ ବହିଃବସ୍ତୁକୁ ତ୍ୟାଗ କରିବାକୁ ସାହସ କରିବେ ନାହିଁ।

ପ୍ରକୃତ ସାଧକର ଜୀବନଯାପନ ପ୍ରଣାଳୀ ଅତି ସରଳ ଓ ଛଳନାଶୂନ୍ୟ ଅଟେ। ସେହି ସାଧକର ଅନ୍ତର ଭିତରର ରାଜାଧିରାଜ ଅତି ବିଳାସବ୍ୟସନରେ ଅନାମଧେୟ ଦେଉଳ ଭିତରେ କିମ୍ବା ଅଜଣା ଅଶୁଣା ଗଛତଳେ ଆନନ୍ଦରେ ରହିଥାଏ। ସାଧାରଣତଃ ଗଭୀର ରାତିରେ ଦେଉଳ ଭିତରେ କିମ୍ବା ଗଛତଳେ କୌଣସି ଲୋକବାକ ନ ଥାନ୍ତି। ପୂର୍ଣ୍ଣଶାନ୍ତି ବିରାଜୁଥାଏ। ତେଣୁ ସାଧକ ସେଠାରେ ଶାନ୍ତିରେ ମହାଆନନ୍ଦରେ କାଳାତିପାତ କରୁଥାଏ।

ସୁଖମୟ କୋମଳ ବିଛଣା ଯୋଗୁଁ ଯେ ସୁଖନିଦ୍ରା ହୁଏ ତାହା ଭାବିବା ଭୁଲ। ମଣିଷର ହୃଦୟ ସ୍ୱଚ୍ଛ ପବିତ୍ର ଥିଲେ ନିଦ୍ରା ସୁଖମୟ ହୁଏ। ପ୍ରକୃତ ସାଧକର କୌଣସି ମାନସିକ ଜଞ୍ଜାଳ ନ ଥିବା ହେତୁ ତା'ର ମନ ସ୍ୱଭାବତଃ ସରଳ ଏବଂ ସ୍ୱଚ୍ଛ ଥାଏ। ସେ ପ୍ରତ୍ୟେକ ବସ୍ତୁକୁ ଆନନ୍ଦର ସହିତ ଭଲପାଉଥିବାରୁ ଦେଉଳରେ କିମ୍ବା ଗଛମୂଳେ, ସିମେଣ୍ଟ ଉପରେ କିମ୍ବା ରଗଡା ଚଟାଣ ଉପରେ ରହିଥିଲେ ମଧ୍ୟ ନିଜ ଅନ୍ତରର ସ୍ୱଚ୍ଛତା ଓ ପବିତ୍ରତା ରୂପକ କୋମଳ ବିଛଣା ଉପରେ ସୁଖରେ ନିଦ୍ରା ଯାଇଥାଏ।

ଏପରି ଅବସ୍ଥାରେ କିଏ ସୁଖୀ ନ ହେବ ? ଏହା ବ୍ୟତୀତ ଅନ୍ୟ ସମସ୍ତେ ଦୁଃଖୀ। ସେମାନଙ୍କର ବହୁ ଆସବାବପତ୍ର ଥିଲେ କ'ଣ ହେବ? ସେମାନଙ୍କର ମନ କାମନା ରୂପକ କର୍କଟ ରୋଗରେ ଆକ୍ରାନ୍ତ। ସେମାନଙ୍କର ବୁଦ୍ଧି ପ୍ରତାରଣା ରୂପକ ପୃଷ୍ଠବ୍ରଣରେ ପୀଡିତ। ଏହିକଥା ମଧ୍ୟ ଉପନିଷଦରେ ସୁନ୍ଦର ଭାବରେ ବର୍ଣ୍ଣନା କରାଯାଇଛି। "ତ୍ୟାଗେନୈକେ ଅମୃତତ୍ୱମାନଶୁଃ*।" ଅର୍ଥାତ୍ କେବଳ ତ୍ୟାଗ ଦ୍ୱାରା ଅମୃତତ୍ୱ ଲାଭ କରାଯାଇପାରେ।

ପୁଣି ମଧ୍ୟ ଅନ୍ୟ ଏକ ଉପନିଷଦରେ ତ୍ୟାଗର ମାହାତ୍ମ୍ୟ ବର୍ଣ୍ଣନା କରିବାକୁ ଯାଇ ଆଉ ଜଣେ ଋଷି କହିଛନ୍ତି, "ବୈରାଗ୍ୟଂ ଏବ ଅଭୟମ୍**।" ଅର୍ଥାତ୍ ତ୍ୟାଗ ହିଁ ନିର୍ଭୟତାର ମୂଳଦୁଆ।

---

* କୈବଲ୍ୟ ଉପନିଷଦ (୩)

** ବୈରାଗ୍ୟ ଶତକମ୍ - ଭର୍ତ୍ତୃହରି-୩୧

**ଯୋଗରତୋ ବା ଭୋଗରତୋ ବା**

**ସଙ୍ଗରତୋ ବା ସଙ୍ଗବିହୀନଃ।**

**ଯସ୍ୟ ବ୍ରହ୍ମଣି ରମତେ ଚିତ୍ତଂ**

**ନନ୍ଦତି ନନ୍ଦତି ନନ୍ଦତ୍ୟେବ ॥୧୯॥**

**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

ଯୋଗରତଃ = ଯୋଗରେ ଲିପ୍ତ ହେଉ, ବା = କିମ୍ବା, ଭୋଗରତଃ = ଭୋଗରେ ଲିପ୍ତ ହେଉ, ବା = କିମ୍ବା, ସଙ୍ଗରତଃ = ସଙ୍ଗ ମେଳରେ ମାତିରହୁ, ବା = କିମ୍ବା। ସଙ୍ଗବିହୀନଃ = ଜଗତର କୋଳାହଳରୁ ଦୂରେଇ ଯାଇ ନିର୍ଜନରେ କାଳାତିପାତ କରୁ, ଯସ୍ୟ = ଯାହାର, ବ୍ରହ୍ମଣି = ବ୍ରହ୍ମରେ, ରମତେ = ମଜ୍ଜିରହେ, ଚିତ୍ତଂ = ମନ, ନନ୍ଦତି = ଆନନ୍ଦିତ ହୁଏ, ନନ୍ଦତି = ଆନନ୍ଦିତ ହୁଏ, ନନ୍ଦତି ଏବ = କେବଳ ସେ ଆନନ୍ଦିତ ହୁଏ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ।

୧୯. ଯାହାର ମନ ସବୁବେଳେ ବ୍ରହ୍ମରେ ମଗ୍ନଥାଏ, ସେ ଯୋଗରେ ଲାଗିରହୁ ବା ଭୋଗ ବିଳାସରେ ମାତିରହୁ, ସଂଗମେଳରେ ଦିନ କଟାଉ ବା ସାଙ୍ଗସାଥି ଛାଡି ନିର୍ଜନରେ ଶାନ୍ତି ଉପଭୋଗ କରୁ,(ସର୍ବତ୍ର ସେଇ ଏକ ଅଖଣ୍ଡ) ଆନନ୍ଦ ହିଁ ଉପଭୋଗ କରେ।

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ହିନ୍ଦୁ ଶାସ୍ତ୍ର ଅନୁଯାୟୀ ବ୍ରହ୍ମ ଅନୁଭୂତିର ମାହାତ୍ମ୍ୟ ଏଠାରେ ବର୍ଣ୍ଣନା କରାଯାଇଛି। ଯାହାର ଏହି ପରମସତ୍ୟ ବ୍ରହ୍ମର ଅନୁଭୂତି ହୋଇଛି, ତାହା ନିକଟରେ ଜନଗହଳି ବା ଜନଶୂନ୍ୟ ସ୍ଥାନ, ଯୋଗାବସ୍ଥା ବା ଭୋଗଅବସ୍ଥା କୌଣସି ପରିବର୍ତ୍ତନ ଆଣିଦିଏ ନାହିଁ। ସେ ନିତ୍ୟ ଆନନ୍ଦରେ ବୁଡିରହେ।

ସ୍ଥିର ମନ ଆନନ୍ଦର ଉତ୍ସ ଅଟେ। କିନ୍ତୁ ବାସନା ଜର୍ଜରିତ ମନ ମାୟା ମୋହରେ ବୁଡ଼ି ଅତିଶୟ ଚଞ୍ଚଳ ହୋଇ ଅହରହ ଅସ୍ଥିର ହୁଏ। ସୁଖ କାହିଁ? (ଅଶାନ୍ତସ୍ୟ କୁତଃ ସୁଖମ୍) ଯେ ନିଜର ଅନ୍ତରସ୍ଥ ପରମାତ୍ମାଙ୍କୁ ଅନୁଭବ କରିପାରିଛି, ନାମ ଓ ରୂପ ଜନିତ ବହୁବିଧ ସଂସାରର ଅସାରତାକୁ ଯେ ଭଲ ଭାବରେ ହୃଦୟଙ୍ଗମ କରିପାରିଛି, ଆଉ ଯିଏ ସେହି ଏକ ଅସୀମ ପରମାନନ୍ଦକୁ. ହୃଦୟରେ ଅନୁଭବ କରିପାରିଛି, ସେ ହିଁ ପ୍ରକୃତରେ ସୁଖୀ। ତାହାରି ଆନନ୍ଦ ହିଁ ପ୍ରକୃତ ଆନନ୍ଦ। ସେ ଆନନ୍ଦ କୌଣସି ବିଷୟବସ୍ତୁରୁ ଜନ୍ମଲାଭ କରିନଥାଏ ବା ବ୍ୟକ୍ତିବିଶେଷଙ୍କର ପାରିପାର୍ଶ୍ୱିକ ଅବସ୍ଥାରୁ ସୃଷ୍ଟି ହୋଇ ନ ଥାଏ।

ବ୍ରହ୍ମ ଅନୁଭୂତ ମାନବ ନିକଟରେ ଆଉ କୌଣସି ପଦାର୍ଥର ବିଶେଷତ୍ୱ ନ ଥାଏ। ତେଣୁ ସେ ଆତ୍ମସଂଯୋଗ ରୂପକ ଯୋଗରେ ଲିପ୍ତ ହେଉ ବା ଇନ୍ଦ୍ରିୟ ଭୋଗ୍ୟ ବିଷୟବସ୍ତୁରେ ମଜ୍ଜି ରହୁ, ସାଙ୍ଗସାଥି ମେଳରେ ଦିନ କଟାଉ ବା ସାଙ୍ଗସାଥିଶୂନ୍ୟ ହୋଇ ନିର୍ଜନରେ ଧ୍ୟାନରତ ହେଉ, ସେ ଅନ୍ତରରେ ସର୍ବଦା ପରମାନନ୍ଦ ଉପଭୋଗ କରୁଥାଏ। ସେ ଇନ୍ଦ୍ରିୟଲାଳସା ପରିତୃପ୍ତି କରିବା ନିମିତ୍ତ ବହିଃଜଗତର କୌଣସି ବସ୍ତୁର ଆବଶ୍ୟକତା ଉପଲବ୍ଧି କରେନାହିଁ।

ଏହି ପ୍ରକାର ପରିପୂର୍ଣ୍ଣ ମାନବର ବ୍ୟବହାରକୁ ସଂଯତ କରିବା ନିମିତ୍ତ ଅନ୍ୟ କୌଣସି ଶାସ୍ତ୍ର କଥା ଦୂରେ ଥାଉ, ବେଦର ମଧ୍ୟ କୌଣସି ନୀତିନିୟମ (ବିଧିନିଷେଧ) ନାହିଁ ବୋଲି ବହୁ ପଣ୍ଡିତ କହିଯାଇଛନ୍ତି। ସେ ସବୁ ଦିଗରୁ ସ୍ୱାଧୀନ। ଯେତେବେଳେ ଯାହା ଇଚ୍ଛା ହୁଏ, ସେ ତାହାକରେ। ଏହି ପ୍ରକାର ପରିପୂର୍ଣ୍ଣ ମାନବର ସ୍ୱାଧୀନତା ବିଷୟରେ ବିଶ୍ଳେଷଣ କରିବାକୁ ଯାଇ ପଞ୍ଚଦଶୀ ନିମ୍ନଲିଖିତ ମତେ ତାହାର ଗୁଣଗାନ କରିଛି।

ମାତା-ପିତ୍ରୋର୍ବଧଃ ସ୍ତେୟଂ ଭୃଣହତ୍ୟାନ୍ୟଦୀଦୃଶମ୍।
ନ ମୁକ୍ତିଂ ନାଶୟେତ୍ପାପଂ ମୁଖକାଂତିର୍ନ ନଶ୍ୟତି।"

(ପଞ୍ଚଦଶୀ ୧୪:୧୭)

ଅର୍ଥାତ୍ ସେ ପିତାମାତାଙ୍କୁ ବଧ କରୁ, ମାତୃଗର୍ଭସ୍ଥ ଭ୍ରୁଣକୁ ହତ୍ୟା କରୁ। ଏସବୁ ପାପପରିପୂର୍ଣ୍ଣ କାର୍ଯ୍ୟ ତାକୁ ତାହାର ଆନନ୍ଦରୁ ବିଚ୍ୟୁତ କରିପାରେ ନାହିଁ, କିମ୍ବା ତାହାର ପ୍ରସନ୍ନ ବଦନକୁ ମ୍ଳାନ କରିପାରେ ନାହିଁ।

ବ୍ରାହ୍ମଣମାନଙ୍କ ପ୍ରସୂତ ବେଦର କର୍ମକାଣ୍ଡ ଅନୁଯାୟୀ ପାପ ନିମିତ୍ତ ପ୍ରାୟଶ୍ଚିତ ଇତ୍ୟାଦି ବିଧି-ନିୟମ ପରିପୂର୍ଣ୍ଣମାନବ ନିକଟରେ କାର୍ଯ୍ୟକାରୀ ହୋଇପାରେନା। ପରିପୂର୍ଣ୍ଣମାନବର ଶକ୍ତି ମାନବକଳ୍ପନାର ବାହାରେ। କର୍ମମୟ ଦୁନିଆରେ ସ୍ଥଳ ବିଶେଷରେ ଏ ପ୍ରକାର ଶକ୍ତି ଦେଖିବାକୁ ମିଳେ। ସୁପ୍ରିମକୋର୍ଟର ବିଚାରପତି ନରହତ୍ୟାକାରୀକୁ ଫାଶୀଦଣ୍ଡ ନଦେଇ ଛାଡି ବି ଦେଇପାରେ ବା ଭାରତର ରାଷ୍ଟ୍ରପତି ମୃତ୍ୟୁଦଣ୍ଡରେ ଦଣ୍ଡିତ ବ୍ୟକ୍ତିର ଦଣ୍ଡକୁ ଲାଘବ ବି କରିଦେଇପାରେ। ଏପରି କ୍ଷମତା ପ୍ରତ୍ୟେକ ଲୋକ ହାତରେ ଦିଆଯାଇ ନ ଥାଏ। କିନ୍ତୁ ଦିଆଯାଇଥାଏ ସେହିମାନଙ୍କୁ, ଯାହାଙ୍କର ବିଚାର, ଯୋଗ୍ୟତା ଉପରେ ଜାତିର ପୂର୍ଣ୍ଣ ବିଶ୍ୱାସ ଓ ଆସ୍ଥା ଥାଏ।

ସିଦ୍ଧହସ୍ତ ସୁଶିକ୍ଷିତ ଡାକ୍ତର ହିଁ ଅନ୍ୟ ଜଣେ ଜୀବିତ ମାନବର ଶରୀରରେ ଅସ୍ତ୍ରୋପଚାର କରେ। ସ୍ଥଳ ବିଶେଷରେ ସେହି ଅସ୍ତ୍ରୋପଚାର ଯୋଗୁଁ ରୋଗୀର ପ୍ରାଣହାନୀ

ମଧ୍ଧ ଘଟେ। ସମାଜରେ ଜଣକ ଅସ୍ତ୍ରଚାଳନାରେ ପ୍ରାଣହାନୀ ଘଟିଲେ ସେ ଲୋକକୁ ହତ୍ୟାକାରୀ କହୁଥିବା ବେଳେ ଡାକ୍ତରର ଅସ୍ତ୍ରୋପଚାରକୁ ସେବା ବୋଲି ଗ୍ରହଣ କରାଯାଏ।

ସେହିପରି ପରିପୂର୍ଣ୍ଣମାନବ ନିଜର ସ୍ୱାର୍ଥ ନିମିତ୍ତ କୌଣସି ହୀନକାମ କରେନାହିଁ କିମ୍ବା କରିପାରେ ନାହିଁ ବୋଲି ତାହାକୁ ଏତେ ବଡ ସ୍ୱାଧୀନତା ଦିଆଯାଇଛି। ପୁଅର ପରିପକ୍ୱ ଅବସ୍ଥା ଆସିଲେ ବାପ ଗନ୍ତାଘରର ଚାବିକାଠି ତାହାକୁ ଦିଏ। କିନ୍ତୁ ପୁଅର ସେପରି ଜ୍ଞାନ ନ ଆସିବା ଯାଏ ଗନ୍ତାଘରର ଚାବିକାଠି ଦିଆଯାଏ ନାହିଁ, କାରଣ ପୁଅ ଏହାର ସଦ୍‌ବ୍ୟବହାର ପରିବର୍ତ୍ତେ ଅସଦ୍ ବ୍ୟବହାର କରେ ଅର୍ଥାତ୍ ଦତ୍ତ ସ୍ୱାଧୀନତାର ଅପବ୍ୟବହାର କରେ। ପୁଅ ଗନ୍ତାଘର ଚାବିକାଠି ନେଇ ସଞ୍ଚିତ ଧନର ସଦ୍‌ବ୍ୟବହାର କରି ତାହାକୁ ଦ୍ୱିଗୁଣିତ କରିପାରିବ ବୋଲି ବିଶ୍ୱାସ ଆସିଲେ ବାପା ସଙ୍ଗେ ସଙ୍ଗେ ବିନା ଆପତ୍ତିରେ ଚାବିକାଠି ଦେଇଥାଏ।

ସୁତରାଂ ପରିପୂର୍ଣ୍ଣମାନବର ସ୍ୱଭାବ ଏପରି ଭାବେ ପରିମାର୍ଜିତ ହୋଇଥାଏ ଯେ ସେ କେତେବେଳେ ହେଲେ ଅସାମାଜିକ ବା ଅନୀତି ସ୍ୱଭାବର କାର୍ଯ୍ୟ ତ ଦୂରେ ଥାଉ, ସେପରି ଚିନ୍ତା ବି କରେ ନାହିଁ। ସେ ଜଗତକୁ ବ୍ରହ୍ମମୟ ଦେଖି ଦେଖି ନିଜେ ବ୍ରହ୍ମ ହୋଇଯାଇ ଥାଏ। "ବ୍ରହ୍ମବିଦ୍ ବ୍ରହ୍ମୈବ ଭବତି*"। ତେଣୁ ଉପନିଷଦ୍‌ର ମନୀଷୀଗଣ ନିଜ ଅନୁଭୂତିରୁ ଆମକୁ ନିର୍ଭର ପ୍ରତିଶ୍ରୁତି ଦେଇ କହିଥାନ୍ତି ଯେ, ଆତ୍ମାନୁଭୂତ ମହାତ୍ମା କେବଳ ଆତ୍ମବିତ୍ ହୋଇ ଜଗତର ହିତ ନିମିତ୍ତ କାର୍ଯ୍ୟକରି ଆତ୍ମାର ବିକାଶ ହିଁ କରାଉଥାନ୍ତି। "ଆତ୍ମକ୍ରୀଡ଼ ଆତ୍ମରତିଃ କ୍ରିୟାବାନ୍**।"

---

* ମୁଣ୍ଡକୋପନିଷଦ୍ ୩:୨:୯

** ମୁଣ୍ଡକୋପନିଷଦ୍ ୩:୧:୪

**ଭଗବଦ୍‌ଗୀତା କିଞ୍ଚିଦଧୀତା**

**ଗଙ୍ଗାଜଲଲବକଣିକା ପୀତା ।**

**ସକୃଦପି ଯେନ ମୁରାରିସମର୍ଚ୍ଚା**

**କ୍ରିୟତେ ତସ୍ୟ ଯମେନ ନ ଚର୍ଚ୍ଚା ॥୨୦॥**

**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

ଭଗବଦ୍‌ଗୀତା = ଭଗବତ୍ ଗୀତା, କିଞ୍ଚିତ୍ = ଅଳ୍ପ, ଅଧୀତା = ପଢ଼ିଲେ, ଗଙ୍ଗା-ଜଳ-ଲବକଣିକା = ବିନ୍ଦୁଏ ଗଙ୍ଗା ଜଳ, ପୀତା = ପିଇଲେ, ସକୃତ୍-ଅପି = ଥରେମାତ୍ର, ଯେନ = ଯେଉଁ ଲୋକ ଦ୍ୱାରା, ମୁରାରିସମର୍ଚ୍ଚା = ମୁରାରୀଙ୍କର ପୂଜା (ମୁରସ୍ୟ ଅରିଃ = ମୁରାରି) ହୋଇଥାଏ, କ୍ରିୟତେ = କରେ, ତସ୍ୟ = ତାହାର, ଯମେନ = ଯମ ସହିତ, ନ = ନାହିଁ, ଚର୍ଚ୍ଚା = ଆଲୋଚନା ହୁଏ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ ।

*୨୦. ଯେଉଁ ଲୋକ କିଞ୍ଚିତ୍ ପରିମାଣର ଭଗବତ୍‌ଗୀତା ପଢ଼ିଛି, ଯେଉଁ ଲୋକ ବିନ୍ଦୁଏ ଗଙ୍ଗା ଜଳ ପାନ କରିଛି କିମ୍ବା ଯେଉଁ ଲୋକ ଥରେ ମାତ୍ର ମୁରାରୀଙ୍କର ପୂଜା କରିଛି, ତାହା ସହିତ ଯମର କୌଣସି ପ୍ରକାରର ଆଲୋଚନା ହୁଏ ନାହିଁ ।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ଏହି ଶ୍ଳୋକରେ ତିନିଟି ଆଧ୍ୟାତ୍ମିକ ମହତ କର୍ମର ବ୍ୟାଖ୍ୟା କରାଯାଇଛି । (୧) ଗୀତାପାଠ (୨) ଗଙ୍ଗାସ୍ନାନ (୩) ମୁରାରୀ ପୂଜା । ଜୀବନର ସାରତତ୍ତ୍ୱ, ଜୀବନର ଲକ୍ଷ୍ୟ ବା ଉଦ୍ଦେଶ୍ୟ ଏବଂ କେଉଁ ଉପାୟରେ ଏହି ଲକ୍ଷ୍ୟ ହାସଲ କରିହେବ ତାହା ସର୍ବ ଉପନିଷଦ୍‌ର ସାର ଭଗବତ ଗୀତାର ଅଧ୍ୟାୟ ମାନଙ୍କରେ ବର୍ଣ୍ଣନା କରାଯାଇଛି । ତାହାକୁ ଧ୍ୟାନର ସହିତ ଶ୍ରବଣ ଓ ମନନ କଲେ ଉତ୍ତମ ରୂପେ ବୁଝିହେବ ।

ସ୍ୱର୍ଗର ଗଙ୍ଗା, ମାନବ ବୁଦ୍ଧିର ଅଗୋଚର । ଭଗୀରଥଙ୍କର ଅକ୍ଲାନ୍ତ ଚେଷ୍ଟାରେ ତାହା ମାନବର ଅନୁଭୂତି ସ୍ତରକୁ ଅଣାଯାଇ ପାରିଛି । ତଥାପି ଏପରି ଶୁଦ୍ଧ ଓ ସୂକ୍ଷ୍ମଜ୍ଞାନରୂପା ଗଙ୍ଗାକୁ ମାନବ ସମାଜ ଗ୍ରହଣ କରିପାରିବ ନାହିଁ ବୋଲି ଚିର ତପସ୍ୱୀ, କୈଳାସପତି ମହାଯୋଗୀ ମଙ୍ଗଳମୟ ଶିବ, ଭଗୀରଥଙ୍କ ଅନୁରୋଧରେ ଧୀରେ ଧୀରେ ଧାରାବାହିକ ଭାବେ ଗଙ୍ଗାଙ୍କୁ ପ୍ରକାଶ କରିଅଛନ୍ତି । ତାହାରି ଫଳରେ ସମଗ୍ର ଦେଶ ଜ୍ଞାନର ପ୍ରଖର ସ୍ରୋତରେ ଭାସି ନ ଯାଇ ଜ୍ଞାନଜଳରେ ଶସ୍ୟ ଶ୍ୟାମଳା ହୋଇ ଉଠିଛି ।

ଏଠାରେ ଗଙ୍ଗା ଆଧ୍ୟାତ୍ମିକ ଜ୍ଞାନର ପ୍ରତୀକ। ହିନ୍ଦୁମାନଙ୍କର ଏହା ଚିରସ୍ରୋତା ଆତ୍ମଜ୍ଞାନ ଗଙ୍ଗା। ଗୁରୁଙ୍କ ଠାରୁ ଶିଷ୍ୟମାନଙ୍କ ନିକଟକୁ ଅବାରିତ ଭାବେ ପ୍ରବାହିତ ହେଉଛି। ଏହି ପ୍ରକାର ଜ୍ଞାନ ଗଙ୍ଗାର ପବିତ୍ର ଜଳରୁ କଣିକାଏ ପାନକଲେ ସାଧକ ଚିରତୃପ୍ତି ଲାଭ କରେ।

ଆଜିକାଲି କିନ୍ତୁ ଏହି ଦେଶର ସନ୍ତାନ ଗଙ୍ଗାଙ୍କୁ ହିମାଳୟ କନ୍ୟା ଚିରସ୍ରୋତା ନଦୀବୋଲି ଗ୍ରହଣ କରେ। ସେହି ଜଳରେ ଦେଶ ନିଜର ଚାହିଦା ମେଣ୍ଟାଇବାରେ ଉପକୃତ ହେଉଛି ବୋଲି ଗଙ୍ଗାନଦୀ ପ୍ରତି ସମସ୍ତେ କୃତଜ୍ଞ। ବୈଜ୍ଞାନିକ ମତ ଅନୁସାରେ ଏହା ହିଁ ଏକମାତ୍ର ଉପକାର। ଏହା ବ୍ୟତୀତ ଗଙ୍ଗାର ଅନ୍ୟ କିଛି ଅର୍ଥ ଅଛି ବୋଲି ସେମାନେ ବିଶ୍ୱାସ କରନ୍ତି ନାହିଁ। ଗଙ୍ଗାର ଏହି ପ୍ରକାର ମହତ ଆଧ୍ୟାତ୍ମିକ ପବିତ୍ର ଅର୍ଥକୁ ସେମାନେ ଅନ୍ଧବିଶ୍ୱାସ ବୋଲି ବର୍ଣ୍ଣନା କରନ୍ତି। ନଦୀର ଜଳରେ କି ପବିତ୍ରତା ରହିଛି ବୋଲି ସେମାନେ ପ୍ରଶ୍ନ କରନ୍ତି। ସେ କ୍ଷେତ୍ରରେ ସେମାନଙ୍କୁ ଅନ୍ୟ ଗୋଟିଏ ପ୍ରଶ୍ନ ପଚରା ଯାଇପାରେ। "ଆମର ଜାତୀୟ ପତାକା" ତିନିଟି ରଙ୍ଗର। ତିନିଖଣ୍ଡି ବସ୍ତ୍ର ଏକତ୍ର ସିଲାଇ ହୋଇଛି ଓ ସେମାନଙ୍କ ମଝିରେ ଏକ ଚକ୍ରର ଚିହ୍ନ। ବସ୍ତ୍ରରେ ବା ପବିତ୍ରତା କ'ଣ ? କିନ୍ତୁ ମୋ ଦେଶ ଜାତୀୟ ପତାକାର ମହତ୍ୱ ବସ୍ତ୍ର ଉପରେ ନୁହେଁ। ଯେଉଁ ମହତ ଉଦ୍ଦେଶ୍ୟ ଏହି ରଙ୍ଗ ଓ ଚକ୍ର ଉପରେ ଆରୋପ କରାଯାଇଛି, ସେହି ଉଦ୍ଦେଶ୍ୟର ମହତ୍ୱ ରହିଛି। ସେହିପରି ଅହରହ ଅବାରିତ ଭାବେ ଗୁରୁଙ୍କ ଠାରୁ ଶିଷ୍ୟ ନିକଟକୁ ପ୍ରବାହିତ ହେଉଥିବା ଆଧ୍ୟାତ୍ମିକ ଜ୍ଞାନକୁ ସୂଚାଉଥିବାରୁ ଗଙ୍ଗାମାତା ଏତେ ପବିତ୍ର।

ସର୍ବସାଧାରଣ ଗଙ୍ଗାକୁ ପବିତ୍ର ମନେକରି ପୂଜା କରନ୍ତି। ପୂଜା କରିବା ଏକ ପରମ ସାନ୍ତ୍ୱନା। ତୀର୍ଥଯାତ୍ରାରେ ଏପରି ପୂଜା ମନକୁ ଶୁଦ୍ଧପୂତ କରେ। କିନ୍ତୁ ଜ୍ଞାନମାର୍ଗର ସାଧକମାନଙ୍କ ଠାରେ ମୂର୍ତ୍ତିପୂଜା ଠାରୁ ମୂର୍ତ୍ତିରେ ଆରୋପିତ ଉଦ୍ଦେଶ୍ୟର ମହତ୍ୱ ଅଧିକ। ତେଣୁ ଏହି ଶ୍ଳୋକରେ କୁହାଯାଇଛି ଯେ ଯିଏ ଏହି ପ୍ରକାର ଗଙ୍ଗାଜଳରୁ କଣିକାଏ ପାନ କରିଛି ସେ ଜୀବନର ମହତ୍ୱ ଉପଲବ୍ଧ କରିଛି।

ସୁତରାଂ ଗୀତା ଯେତେବେଳେ ଜୀବନର ମହତ୍ୱକୁ ପ୍ରତିପାଦିତ କରି ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପାଇଁ ରାସ୍ତା ଦେଖାଇ ଦିଏ, ସେତେବେଳେ ଜ୍ଞାନଗଙ୍ଗାର କଣିକାଏ ପାନକଲେ ସାଧକ ଦୂର ଦିଗ୍‌ବଳୟରୁ ନିଜର ପରମ କାମ୍ୟ ଆନନ୍ଦଧାମର କ୍ଷୀଣ ଆଲୋକରେଖା ଦେଖିବାକୁ ପାଏ। ସମୁଦ୍ର ତୀରର ପୋତାଶ୍ରୟ ଆଉ ବେଶୀଦୂର ନ ଥାଏ। ପୋତାଶ୍ରୟ ଆଲୋକମାଳାର ଆଭାସ ସେ ଦେଖିପାରୁଥାଏ। ତଥାପି ସେ ଯେ

ପୋତାଶ୍ରୟଠାରୁ ବହୁ ଦୂରରେ ଭବସମୁଦ୍ର ମଧ୍ୟରେ ଭାସମାନ। ଭବ ସମୁଦ୍ରର ଜଞ୍ଜାଳ ରୂପକ ଉତ୍ତାଳ ତରଙ୍ଗମାଳାରେ ସେ ସର୍ବଦା ଦୋଦୁଲ୍ୟମାନ। ତଥାପି ଆଶାୟୀ ଭରସା ବି ପାଇପାରୁଛି। କୂଳ ଆଉ ବେଶୀ ଦୂର ନୁହେଁ। ଶୀଘ୍ର ସେଠାରେ ପହଞ୍ଚିବା ନିମିତ୍ତ ସେ ଦ୍ରୁତ ଭାବେ ଗତିଶୀଳ।

ନିୟମ ଅନୁଯାୟୀ ବାହାରର କୌଣସି ଜାହାଜକୁ ହଠାତ୍ ପୋତାଶ୍ରୟ ଭିତରକୁ ତାହାର ଇଚ୍ଛା ଅନୁଯାୟୀ ଆସିବାକୁ ଦିଆଯାଏ ନାହିଁ। ପଥ ନିର୍ଦ୍ଦେଶକ ପୋତଟି ଆଗନ୍ତୁକ ପୋତକୁ ପଥ ଦେଖାଇନିଏ, ସୁତରାଂ ପଥ ନିର୍ଦ୍ଦେଶକ ପୋତଟି ପୋତାଶ୍ରୟ ଭିତରକୁ ପ୍ରବେଶ କରେ। ସେତେବେଳେ ଆଗନ୍ତୁକ ପୋତଟି ଧୀରସ୍ଥିର ଭାବରେ ବାହାରେ ଅପେକ୍ଷା କରିଥାଏ ଓ ପୋତାଶ୍ରୟର ମାଲିକ ନିକଟକୁ ଅହରହ ନିଜ ବିଷୟରେ ସମ୍ବାଦ ପ୍ରେରଣ କରୁଥାଏ।

ସେହିପରି ଯେଉଁ ସାଧକ ଜୀବନର ପୋତାଶ୍ରୟ ନିକଟରେ ପହଞ୍ଚିଯାଇ ସର୍ବଦା ସାହାଯ୍ୟ ଭିକ୍ଷା କରୁଛି ଅର୍ଥାତ୍ କୀର୍ତ୍ତନ କରୁଛି ଓ ପଥ ନିର୍ଦ୍ଦେଶକର(ଗୁରୁଙ୍କର) ଆଗମନକୁ ଅପେକ୍ଷା କରି ରହିଛି, ସେ ଆକୁଣ୍ଠ ଚିତ୍ତରେ ପଥ ନିର୍ଦ୍ଦେଶକ ପୋତକୁ ଅନୁସରଣ କଲାପରି ଗୁରୁଙ୍କର ଅନୁସରଣ କରି ଚାଲେ। ଏହି ପଥ ନିର୍ଦ୍ଦେଶକ କାର୍ଯ୍ୟଟି ଆଧ୍ୟାତ୍ମିକ ଧାରାରେ ମୁରାରୀଙ୍କ ପୂଜାରେ ସମ୍ପାଦିତ ହୋଇଥାଏ। ପୋତାଶ୍ରୟ ନିକଟରେ ଲଙ୍ଗର ପକାଇବା ହିଁ ଧ୍ୟାନ ଅଟେ।

(ମୁର) ଅହମିକା ଭାବ ଦୂର ନ ହେବା ପର୍ଯ୍ୟନ୍ତ ସେହି ଚିରଶାନ୍ତିର ଧାମ ସତ୍ୟରୂପୀ ପୋତାଶ୍ରୟରେ ପ୍ରବେଶ କରିବା ପାଇଁ କେହି ଆଶା କରି ନ ପାରେ।

ଅଜ୍ଞାନତା ଯୋଗୁଁ ଶରୀର, ମନ ଓ ବୁଦ୍ଧି ମାଧ୍ୟମରେ ନିଜକୁ ପରିଚିତ କରାଉଥିବା ଅହମିକା (ଜୀବଭାବ ନଷ୍ଟ ନ ହେବା ପର୍ଯ୍ୟନ୍ତ) ସତ୍ୟରୂପ ପୋତାଶ୍ରୟ ମଧ୍ୟରେ ପ୍ରବେଶ କରି ଚିରଶାନ୍ତି ଉପଭୋଗ କରିବାର ଆଶା ନ ଥାଏ। ଶରୀରଜ୍ଞାନ ଏବଂ ଇନ୍ଦ୍ରିୟଜ୍ଞାନ ଭ୍ରମ ଯୋଗୁଁ ଜୀବ ବସ୍ତୁ ମାଧ୍ୟମରେ ପ୍ରକାଶିତ ହୁଏ ବୋଲି ମନେହୁଏ। ସେଥି ନିମିତ୍ତ କେବଳ ଭକ୍ତିର ସହିତ ସେହି ମୁରାରୀ ପରମ ଚୈତନ୍ୟକୁ ପୂଜାକଲେ ମୁର ବା ଜୀବଭାବ ବିନାଶ ହୁଏ। ବାହାରର ବିଷୟବସ୍ତୁର ସମ୍ପର୍କରେ ମନକୁ ନ ଲଗାଇ ଯଦି ପରମ ଲକ୍ଷ୍ୟ ଆତ୍ମଚୈତନ୍ୟକୁ ଅହରହ ଚିନ୍ତା କରାଯାଏ, ତାହାହେଲେ ମନ ସେହି ଭାବଧାରାରେ ବଳିୟାନ୍ ହୋଇ ନିଜର ଅନ୍ତସ୍ଥ ଚୈତନ୍ୟସତ୍ତାକୁ ଚତୁର୍ଦ୍ଦିଗରେ ବିରାଜମାନ ବୋଲି ଅନୁଭବ କରେ। ପରିଣାମରେ ମନ ବୁଦ୍ଧିର ସମସ୍ତ ସୀମା ବନ୍ଧନ ଭାଙ୍ଗି ଚୁରମାର୍

ହୋଇଯାଏ। ପ୍ରକୃତରେ ଭଗବତ୍ ଗୀତାର ଏହି ପ୍ରକାର ଯୁକ୍ତି ହିଁ ଶ୍ରେଷ୍ଠ ଯୁକ୍ତି।

ଯଦା ତେ ମୋହକଲିଲଂ ବୁଦ୍ଧିର୍ବ୍ୟତିତରିଷ୍ୟତି।

ତଦା ଗନ୍ତାସି ନିର୍ବେଦଂ ଶ୍ରୋତବ୍ୟସ୍ୟ ଶ୍ରୁତସ୍ୟ ଚ ॥ (ଗୀତା ୨:୫୨)

ଶ୍ରୁତିବିପ୍ରତି ପନ୍ନା ତେ ଯଦା ସ୍ଥାସ୍ୟତି ନିଶ୍ଚଳା।

ସମାଧାବଚଲା ବୁଦ୍ଧିସ୍ତଦା ଯୋଗମବାପ୍ସ୍ୟସି ॥ (ଗୀତା ୨:୫୩)

ଯେଉଁ ସାଧକ ଶାସ୍ତ୍ରପାଠ କରି ଲକ୍ଷ୍ୟସ୍ଥଳ ପ୍ରତି ଧ୍ୟାନ ଦେଇ ଅହରହ ସେହି ସ୍ଥାନରେ ପହଞ୍ଚିବା ପାଇଁ ଚେଷ୍ଟା କରୁଥାଏ ତାହାର ମରଣକୁ ଭୟ ନ ଥାଏ। ସେହି ସାଧକକୁ ଯମ ଦେବତା ବାନ୍ଧିନେଇ ପାରନ୍ତି ନାହିଁ କିମ୍ବା ସାଧକ ମୃତ୍ୟୁରୂପ ପରିବର୍ତ୍ତନକୁ ଭ୍ରୂକ୍ଷେପ କରେନାହିଁ। ହିନ୍ଦୁ ଧର୍ମଶାସ୍ତ୍ରରେ ଯମଙ୍କୁ ଧର୍ମରାଜ ବୋଲି କୁହାଯାଏ। ଏହା ଏକ କୌତୂହଳ ବ୍ୟାଖ୍ୟା। କାରଣ ମୃତ୍ୟୁର ନିୟମ ଏପରି ଶୃଙ୍ଖଳିତ ଭାବେ ଗତି କରୁଛି ଯେ ତାହା ନ ଥିଲେ ଜଗତର ଅସ୍ତିତ୍ୱ ନଥା'ନ୍ତା କିମ୍ବା ନୂତନ ସୃଷ୍ଟି ନ ଥାନ୍ତା। ଏକ ଜିନିଷର ବିନାଶ ଅର୍ଥ ଅନ୍ୟ ଏକର ସୃଷ୍ଟି। ନୂତନ ଆକାରରେ ନୂତନ ଅବସ୍ଥାରେ ତାହାର ବିକାଶ ମାତ୍ର। ପ୍ରକୃତରେ ଦେଖିବାକୁ ଗଲେ ସୃଷ୍ଟିର ଅର୍ଥ ବିନାଶ।

ମୃତ୍ୟୁ ରାଜ୍ୟରେ କେବଳ ପରିବର୍ତ୍ତନ ଆସେ। ଶରୀର, ମନ, ବୁଦ୍ଧି ରୂପକ ଯନ୍ତ୍ର ଦ୍ୱାରା ହିଁ ପରିବର୍ତ୍ତନକୁ ଅନୁଭବ କରାଯାଏ। ସାଧକ ଯେତେବେଳେ ଯୋଗ ଅଭ୍ୟାସ ଦ୍ୱାରା ଏହି ତିନୋଟି ଯନ୍ତ୍ରକୁ ପାରିମାର୍ଜିତ କରି ଏହି ପରିବର୍ତ୍ତନ ରାଜ୍ୟର ଉପରକୁ ଉଠେ ସେତେବେଳେ ନିତ୍ୟ ଶାଶ୍ୱତ ପରମାତ୍ମାକୁ ଅନୁଭବ କରେ।

ନିତ୍ୟଃ ସର୍ବଗତଃ ସ୍ଥାଣୁରଚଲୋଽୟଂ ସନାତନଃ। (ଗୀତା୨:୨୪)

ସେତେବେଳେ ସାଧକ ମୃତ୍ୟୁକୁ ଭୟ କରେ ନାହିଁ। ମୃତ୍ୟୁପାଇଁ ତାହାର କୌଣସି ଚିନ୍ତା ନଥାଏ। କିମ୍ବା ପରିବର୍ତ୍ତନ ରୂପ ମରଣ ସାଧକକୁ କେବେହେଲେ ବିଚଳିତ କରିପାରେ ନାହିଁ। ଏହାର ଅନ୍ୟ ଏକ ଅର୍ଥ ବି କରାଯାଇପାରେ। ଯଥା := ଏପରି ସାଧକକୁ ବିଚଳିତ କରିବାକୁ ମୃତ୍ୟୁ ବି ସାହସ କରେନା।

କ୍ରିୟତେ ତସ୍ୟ ଯମେନ ନ ଚର୍ଚ୍ଚା (ଭଜ ଗୋବିନ୍ଦ-୨୦)

ଏହି ଶ୍ଲୋକଟିକୁ ଆନନ୍ଦଗିରି ଲେଖିଛନ୍ତି ବୋଲି ବିଶ୍ୱାସ କରାଯାଏ।

**ପୁନରପି ଜନନଂ ପୁନରପି ମରଣଂ**

**ପୁନରପି ଜନନୀଜଠରେ ଶୟନମ୍।**

**ଇହ ସଂସାରେ ବହୁଦୁସ୍ତାରେ**

**କୃପୟାଽପାରେ ପାହି ମୁରାରେ ।।୨୧।।**

**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

ପୁନଃ ଅପି = ପୁଣି ଥରେ, ଜନନଂ = ଜନ୍ମ, ପୁନରପି = ଏବଂ ପୁଣି, ମରଣଂ = ମୃତ୍ୟୁ, ପୁନଃଅପି = ପୁଣି, ଜନନୀଜଠରେ = ମାତୃ ଗର୍ଭରେ, ଶୟନମ୍ = ଶୋଇବା, ଇହ = ଏଠାକାର, ସଂସାରେ = ଏହି ସଂସାର, ବହୁଦୁସ୍ତାରେ = ଯାହାକୁ ଅତି କଷ୍ଟରେ ଅତିକ୍ରମ କରାଯାଏ, ଅପାରେ = ଅନନ୍ତ, କୃପୟା = ଦୟାକରି, ପାହି = ରକ୍ଷା କର, ମୁରାରେ = ହେ ମୁରାରୀ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ।

*୨୧. ମାତୃଗର୍ଭରେ ଜନ୍ମ, ପୁଣି ଜନ୍ମପରେ ମୃତ୍ୟୁ ଇତ୍ୟାଦି ସଂସାରର ଯେଉଁ ଧାରାବାହିକ ଯାତ୍ରା, ତାହାକୁ ଅତିକ୍ରମ କରିବା ବଡ ଦୁଃସାଧ ଅଟେ। ହେ ମୁରାରୀ ଦୟାକରି ମୋତେ ଏଥିରୁ ରକ୍ଷାକର।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ଜନ୍ମ ମୃତ୍ୟୁ ରୂପକ ଚକଟି ଜୀବ ନିମିତ୍ତ ଅହରହ ଅବିଶ୍ରାନ୍ତ ଭାବରେ ଘୂରୁଅଛି। ବାସନା ଦ୍ୱାରା ପରିଚାଳିତ ହୋଇ, କଳ୍ପନାଦ୍ୱାରା ପରିପୁଷ୍ଟ ହୋଇ, ଅଭ୍ୟାସ ଦ୍ୱାରା ଅଗ୍ରସର ହୋଇ, ତଥାପି ବ୍ୟକ୍ତିବିଶେଷ ନିଜର ଉଦ୍ଦେଶ୍ୟକୁ ଚରିତାର୍ଥ କରି ନ ପାରି ବାରମ୍ବାର ନୂତନ ଅନୁଭୂତିର କ୍ଷେତ୍ର ଅନ୍ୱେଷଣ କରୁଛି। ନିଜର ଜୀବିତ ଅବସ୍ଥାରେ ପ୍ରତ୍ୟେକ ମନୁଷ୍ୟ ନିଜର ବାସନା ସକଳକୁ ଚରିତାର୍ଥ କରି ସାରିବା ପୂର୍ବରୁ ନୂତନ ବାସନାର ଶିକାର ହୁଏ। ନିଜକୁ ଶୁଦ୍ଧପୂତ କରି ଗଢ଼ିବା ନିମିତ୍ତ ସଂସାରକୁ ଆସିଅଛୁ। କିନ୍ତୁ ଆମର ଲକ୍ଷ୍ୟସ୍ଥଳ ଓ ସେଠାରେ ପହଞ୍ଚିବାର ପଥ ବିଷୟରେ ଜ୍ଞାନ ନଥିବାରୁ ଆମର ଇନ୍ଦ୍ରିୟମାନେ ମନର କଳ୍ପନା ସୃଷ୍ଟ ବିଷୟବସ୍ତୁର ସୌନ୍ଦର୍ଯ୍ୟ ଆଡକୁ ବାଧହୋଇ ଟାଣି ହୋଇଯାଆନ୍ତି। ଏହା ହିଁ ମାୟା।

ଆମେ ଆମର ସହଜାତ ବାସନା ଦ୍ୱାରା ଜଗତକୁ ଆସିଅଛୁ। ସେହି ବାସନା ପରିଚାଳିତ ହୋଇ ଯେଉଁସବୁ କାମ କରୁଛୁ, ତାହାର ନାମ ଚେଷ୍ଟା। ସହଜାତ ବାସନାରେ ପରିଚାଳିତ ହୋଇ ସେଗୁଡ଼ିକର ଭୋଗ ଶେଷ କରିବା ନିମିତ୍ତ ଜୀବଭାବାତ୍ମକ ନ ହୋଇ

କାମକଲେ ଆଉ ନୂତନ ବାସନା ଜାତ ହୁଏନାହିଁ। ତାହା ହିଁ ଏକମାତ୍ର ରାସ୍ତା। ସବୁବେଳେ କର୍ମକର। କର୍ମରେ କୃତକାର୍ଯ୍ୟ ହୁଅ। କିନ୍ତୁ ସମସ୍ତ କର୍ମ ଲୋକସଂଗ୍ରହ ଅର୍ଥରେ ଯଜ୍ଞ ବା ତ୍ୟାଗ ଭାବରେ ବା ତାଙ୍କରି ଉଦ୍ଦେଶ୍ୟରେ କରିବା ଉଚିତ୍।

ଏହିପରି ଭାବରେ ବାସନା ସକଳ ଯେତେବେଳେ କ୍ଷୟ ହୋଇଯାଏ, ବିକ୍ଷିପ୍ତ ଚିନ୍ତାଧାରା କମିଯାଏ। ମନ ଓ ବୁଦ୍ଧି ନିସ୍ତେଜ ହୋଇଯାଆନ୍ତି। ସେତେବେଳେ ଯେଉଁ ଅନୁଭୂତି ଅର୍ଜନ କରାଯାଏ ତାହା ହିଁ ପରମ ଆନନ୍ଦ।

ବ୍ୟକ୍ତିବିଶେଷରେ ଯେତେବେଳେ ବାସନା ନ ଥାଏ, ପରିଣାମରେ ଚିନ୍ତାସ୍ରୋତ ନୀରବ ହୋଇଯାଇଥାଏ, ସେତେବେଳେ ନୂତନ କ୍ଷେତ୍ରରେ ନୂତନ ରୂପରେ କୌଣସି ଅନୁଭୂତି ଅର୍ଜନ କରିବା ନିମିତ୍ତ ସୂକ୍ଷ୍ମ ଶରୀରର ଅଭିପ୍ରାୟ ନ ଥାଏ। ଜନ୍ମ ମୃତ୍ୟୁର କାରଣ ଲୋପ ହୋଇଯାଏ।

ଜନ୍ମ ଯନ୍ତ୍ରଣାଦାୟକ- ମୃତ୍ୟୁ ମଧ ତତୋଽଧିକ। ସେପରି ଅବସ୍ଥାରେ ପୁଣି ଜନନୀ ଜଠରରେ ଜନ୍ମନେଇ, ମାତୃଗର୍ଭରେ ବନ୍ଧନରେ ରହି, ଯେଉଁ ଯନ୍ତ୍ରଣା ମଣିଷ ଭୋଗ କରେ ତାହା ଅତି ନିଷ୍ଠୁର ଓ ମର୍ମନ୍ତୁଦ। ତଥାପି ଆଜି ଆମ୍ଭେମାନେ ଏସବୁ କ୍ଷେତ୍ରରେ ଆଗେଇ ପାରିନାହୁଁ। ସବୁବେଳେ ଅସହାୟ ଅବସ୍ଥାରେ ପଡିରହିଛୁ।

ନିଜର ଶୁଦ୍ଧ ପରମ ରମଣୀୟ ସ୍ଥିତିରୁ ଆମର ଯେଉଁ ପତନ ଘଟିଛି, ସେଥିରୁ ଉଦ୍ଧାର ପାଇବା ଆମ ଶକ୍ତିର ବାହାରେ। ଆମ ଭିତରେ ଥିବା ଜୀବଭାବ ଖୁବ୍ ଶକ୍ତିଶାଳୀ ହୋଇ ଆମକୁ ଶାସନ କରୁଛି, ଯେପରି ସେ ଚାହୁଁଛି ଆମେ ସେପରି କରୁଛୁ। ଆମେ ତାହାର ଦାସ ବ୍ୟତୀତ ଅନ୍ୟ କ'ଣ ହୋଇପାରୁ ? ଏହି ପ୍ରକାର ଅତ୍ୟାଚାରୀର ଅତ୍ୟାଚାରରୁ ରକ୍ଷା ପାଇବାକୁ ହେଲେ ଆମର ଜଣେ ସହାନୁଭୂତିଶୀଳ ଶକ୍ତିଶାଳୀ ବନ୍ଧୁ ଦରକାର। ଏପରି ବନ୍ଧୁ କିଏ ହୋଇପାରେ ?

ହେ ମୁରାରୀ, ହେ କୃଷ୍ଣ ମୋତେ ରକ୍ଷାକର...। ଦୟାକରି ସାହାଯ୍ୟ କର। ଏହାହିଁ ତାଙ୍କ ନିକଟରେ ଏକମାତ୍ର ପ୍ରାର୍ଥନା ଏବଂ ତାଙ୍କରି ପାଦ ସେବାହିଁ ଏକମାତ୍ର ରାସ୍ତା।

ମୁଁ ଯେ ମୋର ଇନ୍ଦ୍ରିୟ ସକଳର ଦାସ। ଏ ପର୍ଯ୍ୟନ୍ତ କୌଣସି ଶକ୍ତିଠାରେ ମୋର ଆସ୍ଥା ନାହିଁ। ଏପରି ସ୍ଥଳେ ତାଙ୍କର କୃପାଲାଭ କରିବା ପାଇଁ ମୋର ବା କି ଦାବୀ ଅଛି ?

ହେ ଭଗବାନ, ତୁମକୁ ସତରେ ସାକ୍ଷାତ୍ କରିପାରିବି ଏ ବିଶ୍ୱାସ ମୋର ହେଉନାହିଁ। ମୋର ଆଖିର ଲୁହ ବ୍ୟତୀତ ତୁମ ପାଦରେ ଅର୍ପଣ କରିବାକୁ ମୋର ଆଉ କିଛି ନାହିଁ।

ମୁଁ ମୋର ସ୍ୱାର୍ଥ ନିମିତ୍ତ ଯନ୍ତ୍ରଣା ପାଉଛି। ବିଷୟବାସନାରେ ଜଡି ଯାଇଛି। ଏହି ପ୍ରକାର ବନ୍ଧନ ଓ ଯନ୍ତ୍ରଣା ବ୍ୟତୀତ ମୋର ଆଉ ଅଛି କ'ଣ ? ତଥାପି ହେ ପ୍ରଭୁ ! ମୁଁ ଯେ କ୍ଳାନ୍ତ, ତିରସ୍କୃତ, ଲାଞ୍ଛିତ, ଅନୁତପ୍ତ ଏବଂ ଅସହାୟ।

ମୁଁ ନିଜକୁ ତୋରି ପାଦ ତଳେ ସମର୍ପଣ କରୁଛି- କାତର କଣ୍ଠରେ ଅନୁନୟ କରୁଛି- କରୁଣାରୁ କଣିକାଏ ପାଇବା ପାଇଁ ଆଗ୍ରହର ସହ ଅପେକ୍ଷା କରିଛି। ତୁ ଯେ କରୁଣା ସାଗର... ପ୍ରେମମୟ। ତୁ କ'ଣ ମୁରାରୀ ନୋହୁଁ। ମୋ ପରି ଅସହାୟ ଦୀନ ଅକିଞ୍ଚନ ପ୍ରତି ଟିକିଏ ହେଲେ ଦୟା ଦେଖାଇ ମୋର ଅନ୍ତର ଭିତରେ ଥିବା ବାସନା ରୂପକ ନୃଶଂସ ମୁରକୁ କ'ଣ ବିନାଶ କରିବୁ ନାହିଁ ?

ଏହିପରି ଭାବେ ସେହି ଦୟାମୟଙ୍କ ପାଦତଳେ ନିଜକୁ ସମର୍ପଣ କରି ତାଙ୍କର କୃପାଭିକ୍ଷା କରି ଆମ ଭିତରେ ମହତ ବାସନା ଉଦ୍ରେକ କରିବାକୁ ହେବ। ଏହି ମହତ ବାସନା ହିଁ ଜୀବ ଓ ଜୀବଭାବାତ୍ମକ ବାସନା ସକଳକୁ ବିନାଶ କରିବା ନିମିତ୍ତ ଉପଯୁକ୍ତ ପ୍ରତିଷେଧକ ଔଷଧ ହେବ। ଥରେ ମାତ୍ର ଏହି ଜୀବ ଏବଂ ଜୀବଭାବାତ୍ମକ ବାସନା ଦୂର ହୋଇଗଲେ ସେହି ମୁରଲୀଧାରୀଙ୍କ ମଧୁର ମୁରଲୀ ସ୍ୱର ଶୁଣିବାକୁ ମିଳିବ। ସେହି ବନମାଳୀଙ୍କର ବନମାଳାର ସୁଗନ୍ଧରେ ପ୍ରାଣ ପୁଲକି ଉଠିବ। ତାଙ୍କ ହାତରୁ ସେହି ମଧୁର ଲହୁଣି ଆସ୍ୱାଦନରେ ଆତ୍ମା ତୃପ୍ତିଲାଭ କରିବ। ସେହି ବେଣୁଧାରୀଙ୍କୁ ଆଲିଙ୍ଗନ କରି ଦିବ୍ୟ ଅନୁଭୂତି ଲାଭ କରିବ।

**ରଥ୍ୟାଚର୍ପଟବିରଚିତକନ୍ଥଃ**
**ପୁଣ୍ୟାପୁଣ୍ୟବିବର୍ଜିତପନ୍ଥଃ ।**
**ଯୋଗୀ ଯୋଗନିୟୋଜିତଚିତ୍ତୋ**
**ରମତେ ବାଲୋନ୍ମତ୍ତବଦେବ ॥୨୨॥**
**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ....)**

ରଥ୍ୟା = ରାସ୍ତାରେ, ଚର୍ପଟ = ପରିତ୍ୟକ୍ତ ଛିଣ୍ଡାଲୁଗା, ବିରଚିତ = ତିଆରି, କନ୍ଥଃ = କନ୍ଥା, ପୁଣ୍ୟ-ଅପୁଣ୍ୟ = ଭଲ ଓ ମନ୍ଦ, ବିବର୍ଜିତ = ସମ୍ପୂର୍ଣ୍ଣ ଭାବେ ପରିତ୍ୟକ୍ତ, ପନ୍ଥଃ = ପଥ, ଯୋଗୀ = ସନ୍ନ୍ୟାସୀ, ଯୋଗ ନିୟୋଜିତ ଚିତ୍ତଃ = ଯାହାର ମନ ସର୍ବଦା ଯୋଗରତ, ରମତେ = ଆନନ୍ଦରେ କାଳାତିପାତ କରେ, ବାଲଃ = ଛୋଟ ଶିଶୁ ପରି, ଉନ୍ମତ୍ତବତ୍ ଏବ = ପାଗଳ ପରି, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ ।

*୨୨. ଯେଉଁ ଯୋଗୀ ରାସ୍ତାରେ ଫୋପଡା ଯାଇଥିବା ଛିଣ୍ଡା ଲୁଗା ବା କନାରେ ତିଆରି କନ୍ଥା ଢ଼ାଙ୍କି ହୋଇଥାଏ, ଭଲ ମନ୍ଦ ବିଚାରର ଉର୍ଦ୍ଧ୍ୱରେ ରହି ଜୀବନ କଟାଉଥାଏ, ଯାହାର ମନ ନିଜର ଲକ୍ଷ୍ୟସ୍ଥଳରେ ନିବିଷ୍ଟ ଥାଏ, ସେ ଆତ୍ମଚୈତନ୍ୟରେ ବିଭୋର ଥାଏ, ସେତେବେଳେ ସେ ବାଳକ ବା ପାଗଳଙ୍କ ପରି ହିଁ ଜୀବନ ଯାପନ କରେ ।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ବ୍ରହ୍ମଜ୍ଞାନୀ ଆତ୍ମଜ୍ଞାନ ବା ବ୍ରହ୍ମଜ୍ଞାନ ଲାଭପରେ ବା ଅହଂଭାବ ଦୂର କରିସାରିବା ପରେ ଅର୍ଥାତ୍ ସେ ତା ଶରୀର ନୁହେଁ କିମ୍ବା ଶରୀରର ମାଲିକ ନୁହେଁ ଏହି ଭାବ ଦୂର ହୋଇଗଲା ପରେ ବାଳକ ପରି ବା ପାଗଳପରି ବା ପିଶାଚ ପରି ବ୍ୟବହାର କରେ । ବର୍ହିଜଗତ ସହିତ ବ୍ରହ୍ମଜ୍ଞାନର ଭାବ କିପରି ପ୍ରକାଶିତ ହୁଏ, ତାହାର ସ୍ପଷ୍ଟୀକରଣ ନିମିତ୍ତ ଏହି ଉଦାହରଣଗୁଡିକ ଏଠାରେ ଦିଆଯାଇଛି ।

ସେ ବାଳକ, ପାଗଳ ବା ପିଶାଚ ନୁହେଁ, ତଥାପି ସେ ସେମାନଙ୍କ ପରି ବ୍ୟବହାର କରିଥାଏ । କାରଣ ବାଳକ, ପାଗଳ ଓ ପିଶାଚର ଗୁଣଗୁଡିକ ତାହା ନିକଟରେ ଥାଏ ।

ଛୋଟପିଲାଙ୍କ ନିକଟରେ ଆମେ ସ୍ନେହ ଓ ଘୃଣା ଦେଖିବାକୁ ପାଉ । ସେମାନଙ୍କ ମନରେ ଯେତେବେଳେ ଯେଉଁ ଭାବ ଜାତ ହୁଏ, ତାହା ସେମାନେ ସେତେବେଳେ ପ୍ରକାଶ କରିଦିଅନ୍ତି । କିନ୍ତୁ ଠିକ୍ ପର ମୁହୂର୍ତ୍ତରେ ସେ ଭାବଗୁଡିକ ପାସୋରି ପକାନ୍ତି ।

ପିଲାମାନେ ସବୁବେଳେ ନିଜ ମନର ଭାବ ଅନୁଯାୟୀ ଗତି କରୁଥା'ନ୍ତି। ପୂର୍ବାପରି ସହିତ ସମ୍ବନ୍ଧ ରଖି ବା ବିଚାର କରି କୌଣସି କାର୍ଯ୍ୟ କରନ୍ତି ନାହିଁ। ଜ୍ଞାନୀଲୋକ ସର୍ବଦା ପ୍ରତିମୁହୂର୍ତ୍ତରେ ଉପସ୍ଥିତ ପରିସ୍ଥିତିରେ ଜୀବନଯାପନ କରୁଥାଏ। ଅତୀତ ବିଷୟକୁ ନେଇ ସେ ଦୁଃଖି ହୁଏନାହିଁ, ଅର୍ଥାତ୍ ଅତୀତକୁ ଚିନ୍ତା କରେ ନାହିଁ କିମ୍ବା ଭବିଷ୍ୟତ କଳ୍ପନାରେ ଆଗ୍ରହ ପ୍ରକାଶ କରେନାହିଁ। ଜ୍ଞାନୀ ଲୋକ ଠିକ୍ ଶିଶୁପରି (ବାଳବତ୍), ଯେପରି ଯେଉଁ ଅବସ୍ଥାରେ ଯାହା ମନକୁ ଆସିଲା, ସେଥିରେ ଭୋଳ ହୋଇଥାଏ।

ଆମ ଭିତରେ ପାଗଳ ଲୋକ ଚଲାବୁଲା କରୁଛି। ସେ ତାହାର ଭାବନା ନେଇ ଗତି କରୁଛି। ସାଧାରଣ ଲୋକ ପାଗଳମନରେ କ'ଣ ଅଛି କିଛି ବୁଝିପାରିବ ନାହିଁ। ସେହିପରି ଜ୍ଞାନୀ ଲୋକ ଆମ ଭିତରେ ଚଲାବୁଲା କରୁଛି, କିନ୍ତୁ ତାହାର ଅନ୍ତର୍ନିହିତ ଅନୁଭୂତି ଏତେ ଗଭୀର ଓ ଅଦ୍ଭୁତ ଯେ ତାହା ବୁଝିବା ଆମ୍ଭମାନଙ୍କ ପକ୍ଷରେ ବଡ କଠିନ। ସେ ଆମ ଭିତରେ ରହିଛି। ଆମର ସାମାଜିକ ନୀତି ନିୟମ ମାନି ଚଳୁଛି। ଯଦିଓ ସେ ତାହାର ସମସ୍ତ ଜୀବନ ଯାତ୍ରା ଆମରି ଭିତରେ ରହି କଟାଉଛି, ତଥାପି ସୁଖ ଦୁଃଖ, ଶତ୍ରୁ ମିତ୍ର ଇତ୍ୟାଦି ସାଂସାରିକ ଭାବଧାରା ରୂପ ମେଘମାଳାର ଉର୍ଦ୍ଧ୍ୱରେ ନିଜର ବିବେକରୂପକ ଶିରକୁ ଟେକି ଧରିଚାଲିଛି (ଉନ୍ମତ୍ତବତ୍)।

ସବୁ କ୍ଷେତ୍ରରେ ତାହାର ଭାବଧାରା ସମାନ। ସେ ତାହାର ଅନ୍ତରର ଗଭୀରତମ ରାଜ୍ୟରେ ବିଚରଣ କଲାବେଳେ ସୁଖଦୁଃଖ ଭଲମନ୍ଦ ଇତ୍ୟାଦି ଦ୍ୱନ୍ଦ୍ୱଠାରୁ ବହୁ ଦୂରରେ ରହିଛି। ମନସୃଷ୍ଟ ଜଗତରେ କେବଳ ଦ୍ୱନ୍ଦ୍ୱଭାବ ଅନୁଭୂତ ହୋଇଥାଏ। ବିଶୁଦ୍ଧ ନିକଟରେ ଭଲମନ୍ଦର ସ୍ଥାନ ନ ଥାଏ। ବିଶୁଦ୍ଧ ସ୍ୱଭାବ ଯୁକ୍ତ ମହାପୁରୁଷମାନଙ୍କର ଭାବ ବା କର୍ମଧାରା ଉପରେ ବେଦର କୌଣସି ଆଇନ କାନୁନ୍ ବା ନୀତିନିୟମ ନାହିଁ। ତେଣୁ ଉପନିଷଦ୍ ବଜ୍ରଗମ୍ଭୀର ସ୍ୱରରେ ଘୋଷଣା କରେ ଯେ, ଯେଉଁମାନେ ତ୍ରିଗୁଣାତୀତ, ସେମାନଙ୍କ ନିକଟରେ ନୀତିନିୟମ ନ ଥାଏ, ବିଧି ନିଷେଧ ବି ନ ଥାଏ।

ସେ ନିର୍ଭୟରେ ଘୂରି ବୁଲୁଥାଏ। ଘୋର ଜଙ୍ଗଲରେ, ନିର୍ଜନ ସ୍ଥାନରେ, ଦିନରାତି ଖରାବର୍ଷାରେ ନିର୍ଭୟରେ ଏକାକୀ ଘୂରି ବୁଲୁଥାଏ। ଅନ୍ୟମାନେ ତାହାକୁ ଦେଖି ଭୟ କରନ୍ତି, ସମ୍ମାନ ମଧ୍ୟ ପ୍ରଦର୍ଶନ କରିଥାନ୍ତି। ପିଶାଚ କାହାରିକୁ ଭୟ କରେନା, କିନ୍ତୁ ସମସ୍ତେ ତାକୁ ଭୟ କରନ୍ତି (ପିଶାଚବତ୍)।

ଏହିପରି ଶୁଦ୍ଧ ସ୍ୱଭାବ ବିଶିଷ୍ଟ ମାନବ ରକ୍ତମାଂସ କ୍ଷୁଧାଠାରୁ ଦୂରରେ ନିଜର ଇପ୍‌ସିତ ଲକ୍ଷ୍ୟରେ ଯୋଗଯୁକ୍ତ ହୋଇଥାଏ। ତାହାର ବ୍ରହ୍ମ ଅନୁଭୂତି ହୋଇଥାଏ। ଏହି

ପ୍ରକାର ମାନବର ଯେତେବେଳେ ପରିବର୍ତ୍ତନ ଆସେ, ତାହାର ମନ ଓ ବୁଦ୍ଧି କେବଳ ପୃଥିବୀପୃଷ୍ଠରେ ଘୂରି ବୁଲୁଥାଏ ମାତ୍ର। ସେ ଶରୀରର ଦାସ ହୋଇ ନ ଥାଏ, ତେଣୁ ଶରୀର ତାହାଠାରୁ କୌଣସି ଜିନିଷ ପାଇବା ପାଇଁ ଦାବୀ କରିପାରେନା। ସେ ପ୍ରକାର ଲୋକ ଶରୀର ରକ୍ଷଣ ନିମିତ୍ତ ଯାହାକିଛି ସାମାନ୍ୟ ଜିନିଷ ଚାହିଁଥାଏ, ତେଣୁ ଛିଣ୍ଡାକନ୍ଥାର ଉଦାହରଣ ଦିଆଯାଇଛି।

ସମାଜରେ ପ୍ରତ୍ୟେକଙ୍କର କିଛି ନା କିଛି କର୍ତ୍ତବ୍ୟ କରିବାର ଅଛି। ସେହି କର୍ତ୍ତବ୍ୟ ଓ ନିଜର ଅଭାବ ପୂରଣର ଦାବୀ ଏକସଙ୍ଗରେ ଚାଲିଥାଏ। ଯଦି ତୁମେ ସମାଜରେ ବାସକରି କେତେକ ସୁବିଧା ଓ ସୁଯୋଗ ଉପଭୋଗ କରିବାକୁ ଇଚ୍ଛୁକ ହୁଅ, ତାହାହେଲେ ତୁମକୁ ସମାଜ ପ୍ରତି କିଛି ନା କିଛି କାମ କରିବାକୁ ହେବ। ଯେତିକି କମ୍ ସୁବିଧା ଉପଭୋଗ କରିବାକୁ ଚାହିଁବ, ଅବଶ୍ୟ ସେତିକି ପରିମାଣରେ କର୍ତ୍ତବ୍ୟ ବା କାମ କମିଯିବ।

ସମାଜରେ ମୃତ ବ୍ୟକ୍ତିର କୌଣସି କାମ ନ ଥାଏ ବା ସେ କୌଣସି ସୁବିଧା ଜୀବନ୍ତ ଲୋକଠାରୁ ଦରକାର କରେନା। ସେହିପରି ଜୀବଭାବର ବା ଅହମିକାର ମୃତ୍ୟୁ ଘଟିବା ପରେ ସେହି ବ୍ୟକ୍ତି ସମାଜଠାରୁ କୌଣସି ସୁବିଧା ସୁଯୋଗ ଦରକାର କରେନା, କିନ୍ତୁ ମାନବ ସମାଜ ପାଇଁ ଅସୀମ ପ୍ରେମଯୋଗୁଁ ସେ ସର୍ବଦା କର୍ମରତ ଥାଏ। ତେଣୁ ଭାରତର ମୁନିଋଷିଗଣ, ଶାସ୍ତ୍ର ମତରେ, ଦିନରାତି ଅବିଶ୍ରାନ୍ତ ଭାବରେ କାମ କରି ଚାଲିଥାନ୍ତି। ତାଙ୍କୁ ଦେଖିଲେ ଜଣାପଡେ ସତେ ଯେପରି କୌଣସି ସଂସାରୀ ନିଜ ବ୍ୟକ୍ତିଗତ ସ୍ୱାର୍ଥ ଓ ସୁବିଧା ପାଇଁ ଅତି ଆଗ୍ରହରେ କାମ କରୁଛି।

ଏତେ କାମ ସତ୍ତ୍ୱେ ସନ୍ନ୍ୟାସୀ ସଂସାରରୁ ଖୁବ୍ କମ୍ ଗ୍ରହଣ କରେ, ଅର୍ଥାତ୍ ଯେତିକି ନିତାନ୍ତ ଦରକାର। ଋଷିମାନଙ୍କର ଭେକ ଦେଖିଲେ ତାହା ସହଜରେ ଜଣାପଡେ। ମୁନିଋଷିମାନେ ଜଙ୍ଗଲରେ ରହନ୍ତି, ବଣ ଫଳମୂଳ ଖାଇ ଦିନ କଟାନ୍ତି। ମଶାଣି ପଦାରେ, ଗଛମୂଳରେ ରହନ୍ତି। ନିଜର ବ୍ୟବହାର ପାଇଁ କେବଳ ମାତ୍ର କମଣ୍ଡଳୁଟିଏ ରଖିଥାନ୍ତି। ସମାଜରୁ କମ୍ ନେବା ଓ ସମାଜକୁ ବହୁତ ଦେବା ଯୋଗୁଁ ମହାତ୍ମାମାନେ ଆମର ଭକ୍ତି ଓ ସମ୍ମାନର ପାତ୍ର ହୋଇଥାନ୍ତି।

ଏହି ପ୍ରକାର ଦେବୋପମ ମାନବର ଚାଲିଚଳନ ବର୍ଣ୍ଣନା କଲାବେଳେ ଆଚାର୍ଯ୍ୟ ଶଙ୍କର କହୁଛନ୍ତି ଯେ, ସେହି ପ୍ରକାର ମାନବର ଛିଣ୍ଡା କନ୍ଥା ହିଁ ପୋଷାକ ଅଟେ। ସେହି ଛିଣ୍ଡାକନ୍ଥା ତାହାର କାଶ୍ମୀର ଶାଲ୍। ଛିଣ୍ଡା ଟୁକୁଡା ନାନା ପ୍ରକାର କନା ଯାହା ରାସ୍ତାଘାଟରୁ ପାଏ, ସଂଗ୍ରହ କରି ସିଲାଇ କରି ଘୋଡାଇ ହୁଏ। ଦୁନିଆ ସହିତ ତାଳଦେଇ ଅର୍ଥାତ୍

ଅନ୍ୟମାନେ ସୁନ୍ଦର ସୁନ୍ଦର ଶାଲ୍ ଓ କମ୍ବଳ ଇତ୍ୟାଦି ଘୋଡାଇ ହେଉଛନ୍ତି ବୋଲି ସେ କେବେ ନିଜ ପାଇଁ ତାହା ଭାବନା କରେ ନାହିଁ। ଶୀତ କୌଣସି ପ୍ରକାରେ ଏଡାଇଦେଲେ ହେଲା।

କି ବିଡ଼ମ୍ବନା ! ଆଜି ଆମ ଭିତରେ ପ୍ରତ୍ୟେକେ ଚେଷ୍ଟା କରୁଛନ୍ତି ଯେ କିପରି କାମ କମ୍ କରି ବେଶୀ ଲାଭବାନ୍ ହେବା, କିନ୍ତୁ ଆମ ସଂସ୍କୃତିର ଜନକମାନଙ୍କର କି ଅଦ୍ଭୁତ ଦର୍ଶନ ! ସମାଜ ପାଇଁ ଅକ୍ଳାନ୍ତ ପରିଶ୍ରମ କରି ଖୁବ୍ କମ୍‌ରେ ନିଜର ଗୁଜୁରାଣ ମେଣ୍ଟାଇବା। ଏହି ଦୁଇ ପ୍ରକାର ଦର୍ଶନର ତାରତାମ୍ୟ ଠିକ୍ ଦିନ ଓ ରାତିର ତାରତମ୍ୟ ସଙ୍ଗେ ସମାନ। ଆଧୁନିକ ଜଗତରେ ସଭ୍ୟ ଶିକ୍ଷିତ ଧନୀମାନଙ୍କ ଭୋଗବିଳାସମୟ ଜୀବନ ସଙ୍ଗେ ଦରିଦ୍ର, ନିଃସ୍ୱ, ଅସହାୟ, ଅଶିକ୍ଷିତମାନଙ୍କ ଜୀବନର ପ୍ରଭେଦ ଆକାଶ ପାତାଳ ସଙ୍ଗେ ସମାନ।

ଏହି ଶ୍ଳୋକଟି ଶିଷ୍ୟ ଶ୍ରୀ ନିତ୍ୟାନନ୍ଦ ଲେଖିଛନ୍ତି ବୋଲି କୁହାଯାଇଛି।

**କସ୍ତ୍ୱଂ କୋଽହଂ କୁତ ଆୟାତଃ**
**କା ମେ ଜନନୀ କୋ ମେ ତାତଃ।**
**ଇତି ପରିଭାବୟ ସର୍ବମସାରଂ**
**ବିଶ୍ୱଂ ତ୍ୟକ୍ତ୍ୱା ସ୍ୱପ୍ନବିଚାରମ୍ ॥୨୩॥**
**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

କଃ = କିଏ, ତ୍ୱମ୍ = ତୁମେ, କଃ = କିଏ, ଅହମ୍ = ମୁଁ, କୁତଃ = କେଉଁଠାରୁ, ଆୟାତଃ = ଆସିଲି, କା = କିଏ, ମେ = ମୋର, ଜନନୀ = ମା, କଃ = କିଏ, ମେ = ମୋର, ତାତଃ = ପିତା, ଇତି = ଏହିପରି, ପରିଭାବୟ = ଅନୁସନ୍ଧାନ କର, ସର୍ବଂ = ସମସ୍ତ, ଅସାରଂ = ମୂଲ୍ୟହୀନ, ବିଶ୍ୱଂ = ସମସ୍ତ ଅନୁଭୂତ ଜଗତ, ତ୍ୟକ୍ତ୍ୱା = ତ୍ୟାଗ କରି, ସ୍ୱପ୍ନବିଚାରମ୍ = ମାତ୍ର ସ୍ୱପ୍ନ ଭଳି (କଳ୍ପନାରୁ ପ୍ରସୂତ), ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ।

*୨୩. ତୁମେ କିଏ ? ମୁଁ କିଏ ? ମୁଁ କେଉଁଠାରୁ ଆସିଲି ? କିଏ ମୋର ଜନନୀ ? କିଏ ମୋର ଜନକ ? ଅନୁଭୂତ ସମସ୍ତ ଜଗତ ଯେ (କେବଳ କଳ୍ପନା ପ୍ରସୂତ), ଅସାର ସ୍ୱପ୍ନ ଭଳି। ସେ ସବୁ ଛାଡି ନିଜର ସ୍ୱରୂପ ସମ୍ବନ୍ଧରେ ଅନୁସନ୍ଧାନ କର।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ଏହି ଜଗତରେ ବ୍ୟକ୍ତିବିଶେଷ, ଜ୍ଞାତି କୁଟୁମ୍ବ, ବନ୍ଧୁ ପରିଜନ ସମ୍ବନ୍ଧ ମାଧ୍ୟମରେ ଜୀବନ କଟାଉଛି। ତନ୍ତରେ ସୂତା ଓ ସୂତା କଣ୍ଡା ସମ୍ବନ୍ଧ ଯେପରି, ଏହି ସଂସାରରେ ବ୍ୟକ୍ତିବିଶେଷ ଓ ଅନ୍ୟମାନଙ୍କ ସହ ତାହାର ସମ୍ବନ୍ଧ ଠିକ୍ ସେହିପରି। ମୁଁ ଓ ମୋର ଚାରିପାଖରେ ଥିବା ବିଷୟବସ୍ତୁ ସହ ମୋର ଉପଯୁକ୍ତ ବୁଝାମଣା ବା ସମ୍ପର୍କ ନିର୍ଭର କରେ ମୋର ଜ୍ଞାନ ଓ ବିଚାରବୁଦ୍ଧି ଉପରେ। ମଦନିଶାରେ କିମ୍ବା ପାଗଳାମିରେ ମୁଁ ଯଦି ମୋ ନିଜକୁ ଭୁଲିଯାଇଥାଏ, ତାହାହେଲେ ମୋ ଚାରିପାଖରେ ଥିବା ବିଷୟବସ୍ତୁ ବା ବନ୍ଧୁ ପରିଜନଙ୍କ ସହ ମୋର ସମ୍ବନ୍ଧ ବଡ ଅତୃପ୍ତିକର ହୋଇଉଠେ।

ତେଣୁ ସୁଖମୟ ଜୀବନଯାପନର ଅର୍ଥ ହେଲା, ପରିବାର, ଆତ୍ମୀୟ, ପଡୋଶୀ ଇତ୍ୟାଦିଙ୍କ ସହ ବିଚାରପୂର୍ଣ୍ଣ ସୁସମ୍ପର୍କ ରଖି ସମୟ ଅତିବାହିତ କରିବା। ବିଚାରପୂର୍ଣ୍ଣ ସୁସମ୍ପର୍କର ଅନ୍ୟ ଅର୍ଥ ହେଲା ଆମେ ନିଜକୁ ଭଲଭାବରେ ଜାଣିବା। ଅଜ୍ଞାନତା ହେତୁ ଆମେ ନିଜକୁ ବୁଝି ନ ପାରି ପାଗଳ କିମ୍ବା ମଦ୍ୟପ ଭଳି ବ୍ୟବହାର କରିଥାଉ। ଅହମିକାର ବିଷ ଆମର ବିଚାର ଶକ୍ତିକୁ ଛାରଖାର କରି ଚାରିଆଡେ ଅସରନ୍ତି କର୍ମ ମାଧ୍ୟମରେ ଘୂରାଇ କ୍ଳାନ୍ତ ଶ୍ରାନ୍ତ କରି ପକାଏ। ମହାଭାରତ ଯୁଦ୍ଧ ପୂର୍ବରୁ ଅର୍ଜୁନଙ୍କ ଦଶା ଠିକ୍ ଏହିପରି ହୋଇଥିଲା। କେବଳ ମାତ୍ର ଧୀରସ୍ଥିର ଆତ୍ମନିରୀକ୍ଷଣ ଓ ବିଚାରପୂର୍ଣ୍ଣ ଅନୁସନ୍ଧାନ ଦ୍ୱାରା ଏହି ଭ୍ରମଧାରଣା ଦୂର ହୋଇପାରିବ। ସେ ଭ୍ରମଧାରଣା ବର୍ହିଜଗତର ବିଷୟବସ୍ତୁ ବା ଅନ୍ତର୍ଜଗତର ଭାବଧାରା ହୋଇପାରିଥାଏ।

କୌଣସି ବିଷୟବସ୍ତୁ ସମ୍ବନ୍ଧରେ ସଠିକ୍ ଧାରଣା ନ ଥିଲେ, କେତେଗୁଡିଏ ଭ୍ରମଧାରଣା ସୃଷ୍ଟିହୁଏ। ଏହା ପ୍ରତିଦିନ ସମସ୍ତଙ୍କ ଜୀବନରେ ଘଟୁଛି। ଯେତେବେଳ ଯାଏ ଜଗତର ବିଷୟବସ୍ତୁ ସମ୍ବନ୍ଧରେ ଆମର ଯଥାର୍ଥ ଧାରଣା ଆସି ନ ଥାଏ, ସେତେବେଳ ପର୍ଯ୍ୟନ୍ତ କେତେଗୁଡିଏ ଭ୍ରାନ୍ତଧାରଣା ସୃଷ୍ଟିହୋଇ ନାନା ଅଶାନ୍ତି ଘଟାଇ ଥାଆନ୍ତି। ସେଥିପାଇଁ ବେଦାନ୍ତ ଅନୁସରଣକାରୀଙ୍କ ପ୍ରଥମ କର୍ତ୍ତବ୍ୟ ହେଲା ସମ୍ପୂର୍ଣ୍ଣ ଭାବେ ବୈଜ୍ଞାନିକ ପ୍ରଣାଳୀରେ ଅନ୍ତରସ୍ଥ କର୍ତ୍ତା ସମ୍ବନ୍ଧରେ ଅନୁସନ୍ଧାନ କରିବା।

ଆମେ କେଉଁଠୁ ଆସିଲୁ ତାହାର ଅନୁସନ୍ଧାନ ହେଉ। କୌଣସି ବିଷୟକୁ ଠିକ୍ ବୋଲି ଗ୍ରହଣ କରାନଯାଉ। ବିଚାରକୁ ଉପଯୁକ୍ତ ଭାବେ ବ୍ୟବହାର କରାଯାଉ। କେଉଁଠାରୁ ଆମେ ଆସିଲେ ? କେଉଁଠାକୁ ଯିବା ? ତୁମେ କିଏ ? ମୁଁ କିଏ ? ଆମେ କେଉଁଠାରୁ ଆସିଲେ ? କିଏ ମୋ' ମାତା ? କିଏ ବା ମୋ' ପିତା ? ଏ ସବୁର ଅନୁସନ୍ଧାନ କରିବା ପାଇଁ ଏହି ଶ୍ଳୋକ ଆମକୁ ଉପାୟ ବତାଇ ଦେଇଛି। ସେହି ଉପାୟରେ ଆମେ ଆଗେଇଚାଲିଲେ ଆମର ଭ୍ରମ ଦୂର ହୋଇଯିବ ଓ ପ୍ରକୃତ ସତ୍ୟକୁ ଉପଲବ୍ଧି କରିପାରିବା।

କିନ୍ତୁ ମନ ଯେତେବେଳେ ଏହି ପ୍ରକାର ଅନୁସନ୍ଧାନ କରିବା ନିମିତ୍ତ ପ୍ରସ୍ତୁତ ହୋଇନାହିଁ, ସେତେବେଳେ ଅନୁସନ୍ଧାନ କରିବା ବଡ ଅସମ୍ଭବ। ମନ ସବୁବେଳେ ସଂସାରର ବିଷୟବସ୍ତୁରେ ବୁଡ଼ି ରହିଛି। ସେ ସବୁ ବିଷୟ ପ୍ରତି ମନ ବିମୁଖ ନ ହେବା ପର୍ଯ୍ୟନ୍ତ ତାହାର ପ୍ରକୃତ ସ୍ୱାଧୀନତା ଆସିବ ନାହିଁ ଓ ସେ ଅନୁସନ୍ଧାନ କରିପାରିବ ନାହିଁ।

ସଂସ୍କୃତ ଭାଷାରେ 'ବିଶ୍ୱମ୍'ର ଗଭୀର ଅର୍ଥ ରହିଛି। 'ବିଶ୍ୱମ୍' ଶବ୍ଦର ଅନ୍ତରାଳରେ ଶରୀର, ମନ ଓ ବୁଦ୍ଧି ମାଧ୍ୟମରେ ଯେତେ ଯେତେ ସମ୍ଭାବ୍ୟ ମାନବୀୟ ଅନୁଭୂତି ଅର୍ଜନ କରାଯାଉଛି, ସେ ସବୁର ସମଷ୍ଟିର ନାମ ହେଲା 'ବିଶ୍ୱମ୍'। ସେହି 'ବିଶ୍ୱମ୍'କୁ ସ୍ୱପ୍ନ ପରି ଅସାର ବା ମୂଲ୍ୟହୀନ ବୋଲି ବିଚାର କରିବା ଉଚିତ୍। ଅନୁଭୂତିଶୀଳ ଜଗତରେ ପ୍ରତ୍ୟେକ ବସ୍ତୁ ବିନାଶଶୀଳ, ସୁତରାଂ ସବୁଗୁଡ଼ିକ ଅଳିକ ମିଥ୍ୟା। ଆଚାର୍ଯ୍ୟ ଗୌଡପାଦ ତାଙ୍କର ମାଣ୍ଡୁକ୍ୟ ଓ କାରିକା ଉପନିଷଦ୍‌ରେ ଅତି ଯୁକ୍ତିଯୁକ୍ତ ଭାବେ ପ୍ରମାଣ କରି ଦେଇଛନ୍ତି ଯେ ଆମର ସ୍ୱପ୍ନ ସମୟର ଅନୁଭୂତି ପରି ଜାଗ୍ରତ ଅବସ୍ଥାର ଅନୁଭୂତିଗୁଡ଼ିକ ମଧ୍ୟ ଅସତ୍ୟ।

ସୁତରାଂ ଇନ୍ଦ୍ରିୟଗ୍ରାହ୍ୟ ବିଷୟବସ୍ତୁରେ ଥିବା କାମନା ବାସନାକୁ ମନରୁ ଦୂରକରି ଅନ୍ତର୍ମୁଖୀ ହୋଇ ନିଜର ସ୍ୱରୂପକୁ ଦେଖ। ଏହି ପ୍ରକାର ଅନୁସନ୍ଧାନ ନାମରୂପମୟ ସଂସାରର ଅସାରତା। ପ୍ରମାଣ କରିବା ସଙ୍ଗେ ସଙ୍ଗେ ଜୀବନର ଫମ୍ପା ଅହମିକାର ଅସାରତାକୁ ମଧ୍ୟ ପ୍ରମାଣ କରାଇଦେବ।

ଏହି ଶ୍ଳୋକଟିକୁ ଶ୍ରୀ ଯୋଗାନନ୍ଦ ଭଜଗୋବିନ୍ଦମ୍‌ରେ ଯୋଡିଛନ୍ତି ।

**ତ୍ୱୟି ମୟି ଚାନ୍ୟତ୍ରୈକୋ ବିଷ୍ଣୁଃ**

**ବ୍ୟର୍ଥଂ କୁପ୍ୟସି ମୟ୍ୟସହିଷ୍ଣୁଃ ।**

**ଭବ ସମଚିତ୍ତଃ ସର୍ବତ୍ର ତ୍ୱଂ**

**ବାଞ୍ଛସ୍ୟଚିରାଦ୍ୟଦି ବିଷ୍ଣୁତ୍ୱମ୍ ॥୨୪॥**

**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

ତ୍ୱୟି = ତୁମଠାରେ, ମୟି = ମୋଠାରେ, ଚ = ଏବଂ, ଅନ୍ୟତ୍ର = ଅନ୍ୟସକଳ ସ୍ଥାନରେ, ଏକଃ = ସେହି ଏକ, ବିଷ୍ଣୁଃ = ସର୍ବବ୍ୟାପକ ସତ୍ୟ, ବ୍ୟର୍ଥଂ = ଅଯଥାରେ, କୁପ୍ୟସି = ରାଗକରୁଛ, ମୟି = ମୋ ଉପରେ, ଅସହିଷ୍ଣୁଃ = ଅଧୈର୍ଯ୍ୟ ହୋଇ, ଭବ = ହୁଅ, ସମଚିତ୍ତଃ = ସ୍ଥିର ଚିତ୍ତ, ସର୍ବତ୍ର = ସକଳ ସ୍ଥାନରେ, ତ୍ୱଂ = ତୁମେ, ବାଞ୍ଛସି ଯଦି = ଯଦି ଇଛାକର, ଅଚିରାତ୍ = ଅବିଳମ୍ବେ, ବିଷ୍ଣୁତ୍ୱଂ = ବିଷ୍ଣୁତ୍ୱ ଲାଭ କରିବା ପାଇଁ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ ।

*୨୪. ତୁମ ଠାରେ, ମୋ ଠାରେ ଓ ସକଳ ସ୍ଥାନରେ ସେହି ଏକ ସର୍ବବ୍ୟାପକ ସତ୍ୟ ବା ବିଷ୍ଣୁ ବିରାଜିତ, ଧୈର୍ଯ୍ୟହୀନ ହୋଇ ତୁମେ ବୃଥାଟାରେ ମୋ ଉପରେ ରାଗୁଅଛ । ଯଦି ବିଷ୍ଣୁତ୍ୱ ଲାଭ କରିବାକୁ ଇଚ୍ଛା କରୁଥାଅ, ସବୁ ସମୟରେ ସମଚିତ୍ତ ହୋଇ ରହିବା ଆବଶ୍ୟକ ।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ସେହି ସର୍ବବ୍ୟାପକ ସତ୍ୟ (ବିଷ୍ଣୁ) ତୁମ ଠାରେ ମୋ'ଠାରେ, ଓ ସକଳ କ୍ଷେତ୍ରରେ ବିଦ୍ୟମାନ; ଏହି ଶାଶ୍ୱତ ସତ୍ୟ, ଯାହାକୁ ଆବହମାନ କାଳରୁ ହଜାର ହଜାର ବର୍ଷଧରି ହଜାର ହଜାର ମନୀଷୀଗଣ ବିଭିନ୍ନ ଭାବରେ ବିଭିନ୍ନ ଉପାୟରେ ବିଭିନ୍ନ ଦେଶରେ ଅନୁଭବ କରିଆସିଛନ୍ତି; ସେହି ସତ୍ୟକୁ ଏଠାରେ ଅତି ଦୃଢ଼ତାର ସହିତ ପ୍ରକାଶ କରାଯାଇଛି ।

ଏପରି ସ୍ୱୟଂସିଦ୍ଧ ସତ୍ୟକୁ ସେହିପରି ଭାବରେ ପ୍ରକାଶ କରିବା ବ୍ୟତୀତ ଅନ୍ୟ କୌଣସି ରାସ୍ତା ନାହିଁ । ନିତ୍ୟ ନୂତନ ଅନୁଭୂତି ଅନୁଭବ କରିବା ନିମିତ୍ତ ବୁଦ୍ଧିମାନ ସାଧକଙ୍କର ସାଧନା ବା ଜ୍ଞାନପିପାସା ଖୁବ୍ ପ୍ରବଳ । ସୂକ୍ଷ୍ମ ବୁଦ୍ଧି ସ୍ତରରେ ମଧ୍ୟ ସାଧକ ବହୁବିଧ ଅନୁଭୂତିର ଅନୁଭବ ପାଇଁ ଅତ୍ୟନ୍ତ ଉତ୍ସୁକ । ଗୁରୁଙ୍କର ବାରମ୍ବାର ପୁନରାବୃତ୍ତିର ଉପାୟ ଶିଷ୍ୟମାନଙ୍କୁ ଧୈର୍ଯ୍ୟହୀନ କରି ପକାଏ ବୋଲି ସମୟ ସମୟରେ ନିଜର

ଅଜ୍ଞାତସାରରେ ଶିଷ୍ୟମାନେ ପ୍ରକାଶ କରି ପକାନ୍ତି । ଶିଷ୍ୟମାନଙ୍କର ଏହିପରି ଭାବଧାରଣାକୁ ଲକ୍ଷ୍ୟକରି ଗୁରୁ ବଜ୍ରଗମ୍ଭୀର ସ୍ୱରରେ କହୁଛନ୍ତି "ତୁମେ ଧୈର୍ଯ୍ୟହୀନ ହୋଇ ବୃଥାଟାରେ ବା ବିନା କାରଣରେ ମୋ ଉପରେ ରାଗୁଅଛ ।" କିନ୍ତୁ ଏହି ଚରମ ଓ ପରମ ସୂକ୍ଷ୍ମ ସତ୍ୟକୁ ଜାଣିବା ବା ଅନୁଭୂତିରେ ଆଣିବା ପାଇଁ ପୁନରାବୃତ୍ତି ବ୍ୟତୀତ ଅନ୍ୟ କୌଣସି ପନ୍ଥା ନାହିଁ । କାରଣ ପୁନରାବୃତ୍ତି ହିଁ କେବଳ ଏକମାତ୍ର ଉପାୟ । ଯେଉଁଲୋକ ଏହା ଥରେ ମାତ୍ର ବୁଝିଯାଇଛି, ସେ କେବେ ଆଉ ଗୁରୁଙ୍କ ନିକଟକୁ ଜ୍ଞାନ ନେବା ନିମିତ୍ତ ଫେରେ ନାହିଁ ।

ଥରେ ମାତ୍ର ସେହି ସତ୍ୟ ଉପଲବ୍ଧି ହେଲେ ଆଉ ଅପୂର୍ଣ୍ଣତାର ଅଭାବ ଆସେ ନାହିଁ । ତେଣୁ ପଞ୍ଚଦଶୀରେ କୁହାଯାଇଛି-

ଚୋଦ୍ୟଂ ବା ପରିହାରୋ ବା କ୍ରିୟତାଂ ଦ୍ୱୈତଭାଷୟା ।
ଅଦ୍ୱୈତଭାଷୟା ଚୋଦ୍ୟଂ ନାସ୍ତି ନାପି ତଦୁତ୍ତରମ୍" ॥

(ପଞ୍ଚଦଶୀ ୨ : ୩୯)

ଅର୍ଥାତ୍ ବହୁ ନାମ, ରୂପ ଧରି ଜଗତ ଯେ ପର୍ଯ୍ୟନ୍ତ ପ୍ରକାଶିତ ହୁଏ, ସେ ପର୍ଯ୍ୟନ୍ତ ନାନା ସନ୍ଦେହ ଓ ଆବଶ୍ୟକତା ହୁଏ । କିନ୍ତୁ ଏକତ୍ୱର ଅନୁଭୂତିରେ ସନ୍ଦେହ ନ ଥାଏ । ବ୍ୟାଖ୍ୟାର ଆବଶ୍ୟକତା ପଡେନା । ତେଣୁ ଯେଉଁ ପର୍ଯ୍ୟନ୍ତ ଶିଷ୍ୟ ସେହି ଏକ ପରମ ଓ ଚରମକୁ ଅନୁଭବ ନ କରିଛି, ଗୁରୁ ଶିଷ୍ୟକୁ ବାରମ୍ବାର ସେ ସତ୍ୟ ବିଷୟରେ ବୁଝାଉଥାନ୍ତି । ସମୟ ଆସେ, ଯେତେବେଳେ ଶିଷ୍ୟ ଏକ ଶୁଭ ମହୁର୍ତ୍ତରେ ନିଜ ଅନ୍ତର ଭିତରେ ନିଜେ ସେହି ସତ୍ୟକୁ ଉପଲବ୍ଧି କରେ । ଏହି ପ୍ରକାର ଉପଲବ୍ଧି ଆସିବା ପର୍ଯ୍ୟନ୍ତ ଗୁରୁଶିଷ୍ୟଙ୍କର ସେହି ବୁଝାମଣା ଅଭ୍ୟାସ ଚାଲିଥାଏ ।

ସେ କ୍ଷେତ୍ରରେ, ଗୁରୁ ଶିଷ୍ୟକୁ କହୁଛନ୍ତି "ଧୈର୍ଯ୍ୟହୀନ ହୋଇ ମୋ'ଠାରେ ଅଭିମାନ କରିବା ନିରର୍ଥକ । ଯଦି ସେହି ବିଷ୍ଣୁତ୍ୱକୁ ଅନୁଭୂତିରେ ଆଣିବା ପାଇଁ ବ୍ୟଗ୍ର ହୋଇପଡୁଛ, ସର୍ବତ୍ର ସବୁଠାରେ ସମଚିତ୍ତ ହେବା ନିମିତ୍ତ ଅଭ୍ୟାସ କର ।"

ତାହାପରେ ଗୁରୁ କହୁଅଛନ୍ତି; "ବହୁ ସାଧ ସାଧନା କଲାପରେ, ବହୁ ଶାସ୍ତ୍ର ଆଲୋଚନା ପରେ ଯଦି ସେହି ସତ୍ୟ ତୁମର ଅନୁଭୂତିରେ ନ ଆସିଲା, ସେଥିପାଇଁ ବିରକ୍ତ ହୁଅନାହିଁ ।" ହତାଶ ହେବାର କୌଣସି ଆବଶ୍ୟକତା ନାହିଁ । ସେ ଜ୍ଞାନ ଅର୍ଜନ କରିବା ନିମିତ୍ତ ଉପାୟ ଅଛି ।

ପ୍ରେମ କରିବାର ଉପାୟ ଜାଣିବା ଓ ପ୍ରେମ କରିବା, ଏହି ଦୁଇଟି ସମ୍ପୂର୍ଣ୍ଣ ପୃଥକ ଜିନିଷ। ସେହିପରି ଶାସ୍ତ୍ର ଅଧ୍ୟୟନ କରି, ସାରତତ୍ତ୍ୱକୁ ପସନ୍ଦ କରିବା ଓ ଆତ୍ମସାକ୍ଷାତକାରର ନୀରବ ଅନୁଭୂତି ଲାଭ କରିବା ସମ୍ପୂର୍ଣ୍ଣ ପୃଥକ୍। ଶାସ୍ତ୍ର ଅଧ୍ୟୟନ କରି ତାହାର ସାରତତ୍ତ୍ୱକୁ ଖୁବ୍ ପ୍ରାଞ୍ଜଳଭାବେ ବୁଝିଲେ ଆତ୍ମସାକ୍ଷାତକାର ହୁଏ ନାହିଁ। ସେଥିପାଇଁ ପ୍ରଗାଢ଼ ଚେଷ୍ଟା କରିବାକୁ ପଡିବ। ମନକୁ ଉପଯୁକ୍ତ ଭାବେ ଦୀକ୍ଷିତ କରାଇବାକୁ ହେବ। ହୃଦୟର ଗଭୀର କନ୍ଦରରୁ ଉତ୍‌ଥିତ ସୂକ୍ଷ୍ମ ଭାବଧାରାକୁ ଗ୍ରହଣ କରିବା ନିମିତ୍ତ ପ୍ରସ୍ତୁତ ହେବାକୁ ପଡିବ।

ଏହି ଶ୍ଳୋକରେ ସେହି ସୂକ୍ଷ୍ମ କୌଶଳଟି ବତାଇ ଦିଆଯାଇଛି। "ଭବସମଚିତ୍ତ' ବାରମ୍ବାର ଅଭ୍ୟାସ କର। ସଂସାରରେ ବାସ କରିବା ସମୟରେ ବାଞ୍ଛିତ ଓ ଅବାଞ୍ଛିତ ବହୁତ ଘଟଣା ଆସିବ। କୌଣସିଥିରେ ବିଚଳିତ ନ ହୋଇ ଧୀରସ୍ଥିର ଭାବେ ସେ ସବୁକୁ ଗ୍ରହଣ କରିବାକୁ ଅଭ୍ୟାସ କରିବା ଉଚିତ। ଜଗତରେ ବାହାର ବିଷୟବସ୍ତୁ ବା ଘଟଣାଗୁଡିକ ଆମକୁ ସେତିକିବେଳେ ବିଚଳିତ କରନ୍ତି ଯେତେବେଳେ ଆମ ଭିତରେ ଭଲ କିମ୍ବା ମନ୍ଦ ବାସନା ଥାଏ। ଆମ ଅନ୍ତରର ବାସନା-ଅନୁକୂଳ-ପଦାର୍ଥ ଆମକୁ ଆକର୍ଷଣ କରନ୍ତି ଓ ବାସନା ପ୍ରତିକୂଳ-ପଦାର୍ଥ ଉତ୍ତେଜନା ସୃଷ୍ଟି କରନ୍ତି। ତେଣୁ ମନର ଏହି ଭାରସାମ୍ୟ ରକ୍ଷା କରିବା ନିମିତ୍ତ ଅନ୍ତରର ବାସନା ସକଳକୁ ବୁଝିବିଚାରି ଦୂର କରିବାକୁ ହେବ । କେବଳ ନିଃସ୍ୱାର୍ଥପର କର୍ମ ଓ ଈଶ୍ୱରଭକ୍ତି, ମାନବସେବା, ମହତ ଆଦର୍ଶରେ ଗଭୀର ଧ୍ୟାନ ଓ ଅହରହ ଶାସ୍ତ୍ର ପଠନ ଓ ମନନ ବଳରେ ସ୍ତୂପୀକୃତ ବାସନା ଧୀରେ ଧୀରେ ଦୂରହେବ।

ଗୀତାର ତ୍ରୟୋଦଶ ଅଧ୍ୟାୟ ୯ମ ଶ୍ଳୋକରେ କୁହାଯାଇଛି, "ନିତ୍ୟଂ ଚ ସମଚିତ୍ତତ୍ୱଂ ଇଷ୍ଟାନିଷ୍ଟୋପପତ୍ତିଷୁ" ଅର୍ଥାତ୍ ସର୍ବତ୍ର ସବୁ ସମୟରେ ଅନୁକୂଳ ଓ ପ୍ରତିକୂଳ ବିଷୟ ପ୍ରତି ସମଭାବାପନ୍ନ ହେବା ଉଚିତ। କାରଣ ପୁଣି ଗୀତା ୨ୟ ଅଧ୍ୟାୟର ୪୮ ଶ୍ଳୋକରେ କୁହାଯାଇଛି "ସମତ୍ୱଂ ଯୋଗ ଉଚ୍ୟତେ" । କେବେହେଲେ ଥରେ ମାତ୍ର ଯଦି ଏ ପ୍ରକାର ସମତ୍ୱ ଆସିଯାଏ 'ଅଚିରାତ୍' ବା ତତ୍‌କ୍ଷଣାତ୍ ସେହି ଅପୂର୍ବ ଅବିସ୍ମରଣୀୟ ଅନୁଭୂତି ପ୍ରାପ୍ତ ହେବ। ତୁମେ ଜୀବନ୍ମୁକ୍ତ ହୋଇଯିବ। ଏହାକୁ ବିଷ୍ଣୁତ୍ୱ ଅନୁଭୂତି କୁହାଯାଏ।

**ଶତ୍ରୌ ମିତ୍ରେ ପୁତ୍ରେ ବନ୍ଧୌ**

**ମା କୁରୁ ଯତ୍ନଂ ବିଗ୍ରହସନ୍ଧୌ ।**

**ସର୍ବସ୍ମିନ୍ନପି ପଶ୍ୟାତ୍ମାନଂ**

**ସର୍ବତ୍ରୋତ୍ସୃଜ ଭେଦାଜ୍ଞାନମ୍ ।।୨୫।।**

**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

ଶତ୍ରୌ = ଶତ୍ରୁଠାରେ, ମିତ୍ରେ = ବନ୍ଧୁଠାରେ, ପୁତ୍ରେ = ପୁଅ ଠାରେ, ବନ୍ଧୌ = ସମ୍ପର୍କୀୟଙ୍କ ଠାରେ, ମା କୁରୁ = କେବେ ବି ନୁହେଁ, ଯତ୍ନଂ = ଚେଷ୍ଟା, ବିଗ୍ରହସନ୍ଧୌ = କଳହ ଓ ମିତ୍ରତା, ସର୍ବସ୍ମିନ୍ ଅପି = ସମସ୍ତଙ୍କଠାରେ ମଧ୍ୟ, ପଶ୍ୟ = ଦେଖ, ଆତ୍ମାନଂ = ନିଜର ଆତ୍ମାସ୍ୱରୂପକୁ ଅର୍ଥାତ୍ ନିଜକୁ, ସର୍ବତ୍ର = ସବୁ କ୍ଷେତ୍ରରେ, ଉତ୍ସୃଜ = ଦୂର କର, ଭେଦ ଅଜ୍ଞାନମ୍ = ଅଜ୍ଞାନତା ଜନିତ ଭେଦଭାବ ବା ଦ୍ୱୈତଭାବକୁ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ ।

*୨୫. ଶତ୍ରୁ, ମିତ୍ର କିମ୍ବା ବନ୍ଧୁବାନ୍ଧବମାନଙ୍କ ଠାରେ କେବେହେଲେ ଶତ୍ରୁତା ଆଚରଣ ନିମିତ୍ତ ବା ବନ୍ଧୁତା ସ୍ଥାପନ ନିମିତ୍ତ ଚେଷ୍ଟା କରନାହିଁ କିମ୍ବା ଶକ୍ତିର ଅପଚୟ କରନାହିଁ । ସର୍ବତ୍ର ଆତ୍ମାର ଅସ୍ତିତ୍ୱକୁ ଅନୁଭବ କରି ଅଜ୍ଞାନତା ଜନିତ ଇନ୍ଦ୍ରିୟଗ୍ରାହ୍ୟ ପାର୍ଥକ୍ୟକୁ ଦୂରକର ।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

କେହି ନିଜକୁ ଘୃଣା କରିପାରେ ନାହିଁ । ନିଜ ଶରୀରର କୌଣସି ଅଂଶ ଖୁବ୍ ଯନ୍ତ୍ରଣା ଦେଉଥିବା ବେଳେ, ଡାକ୍ତର ଯଦି ସେହି ଅଂଶକୁ ଛେଦନ କରିବା ନିମିତ୍ତ ଉପଦେଶ ଦିଏ, ଲୋକ ନିଜର ଶରୀର ଛେଦନ କରିବାକୁ ପ୍ରଥମେ କୁଣ୍ଠା ପ୍ରକାଶ କରେ, କାରଣ ଶରୀରର ଯେଉଁ ଅଂଶ ଯେତେ ଅସହ୍ୟ ଯନ୍ତ୍ରଣା ଦେଉଛି, ସେହି ଅଂଶଟି ଯେ ମୋର । ତାହା ସହିତ ମୋର ଶତ୍ରୁତା ନାହିଁ, କିନ୍ତୁ ଅନ୍ୟତ୍ର ଯଦି ମୋର ଅତି ଆପଣାର ପରମହିତୈଷୀ ଭାଇ କେତେବେଳେ କିପରି ମୋର ଟିକିଏ ଅସୁବିଧା କରି ବସେ, ସେତେବେଳେ ମୁଁ ସେହି ଭାଇଙ୍କୁ, ତାହାଙ୍କର ସ୍ତ୍ରୀ ଓ ପିଲାମାନଙ୍କୁ ମଧ୍ୟ ଘୃଣା କରି ବସେ । ଘୃଣିତ ବ୍ୟକ୍ତି ବା ବସ୍ତୁ ଆମଠାରୁ ପୃଥକ ହେଲେ ଘୃଣାଜାତ ହୁଏ ।

ମୋର ଗୋଡଟା ଯେ ମୋର ଏଥିରେ କୌଣସି ସନ୍ଦେହ ନାହିଁ । ତଥାପି ଗୋଡ ସହିତ ଇଚ୍ଛାକରି କୌଣସି ବିଶେଷ ସମ୍ବନ୍ଧ ରଖେନା କିମ୍ବା ଗୋଡପାଇଁ ସବୁ ଅଙ୍ଗପ୍ରତ୍ୟଙ୍ଗ ଠାରୁ ଅଧିକ ଯତ୍ନ ନିଏ ନାହିଁ । ଆଉ ସେଥିରେ ଦରକାର ବି ନ ଥାଏ । ମୋର ଶରୀରର ପ୍ରତ୍ୟେକ ଶିରା ପ୍ରଶିରାରେ ମୁଁ ସବୁ ମୁହୂର୍ତ୍ତରେ ଥାଏ । ମୁଁ ମୋର ଗୋଡଠାରୁ ମୁଣ୍ଡ

ପର୍ଯ୍ୟନ୍ତ ସବୁଠାରେ ଥାଏ ଅର୍ଥାତ୍ ସମସ୍ତ ଶରୀରଟା ହିଁ ମୁଁ । ତେଣୁ ଶରୀରର କୌଣସି ଅଂଶ ପ୍ରତି ବିଶେଷ ଯତ୍ନ ନେବା ଏକ ହାସ୍ୟାସ୍ପଦ ବ୍ୟାପାର । ଯଦି କେତେବେଳେ ମୋ ଦାନ୍ତ ଜିଭକୁ କାମୁଡି ପକାଏ, ଦଣ୍ଡ ଦେବାକୁ ମୁଁ ଦାନ୍ତକୁ ଭାଙ୍ଗି ପକାଏନା । ଜିଭଟା ମୋର, ଦାନ୍ତ ବି ମୋର । ତେଣୁ ଦାନ୍ତକୁ ଦଣ୍ଡ ନ ଦେଇ ମୁଁ ଜିଭକୁ ସାନ୍ତ୍ୱନା ଦିଏ, ଆଶ୍ୱାସନା ଦିଏ ।

ଯେତେବେଳେ ସମସ୍ତ ଜଗତ ଏକ ସତ୍ୟ ଗର୍ଭରୁ ଜାତ, କାହାକୁ ପର ବୋଲି କହି ଘୃଣା କରିବି ବା କିଏ ମୋର ନୁହେଁ ? ସୁତରାଂ ତାହାକୁ ନିଜର କରିବା ପାଇଁ ଅତି ଆଦର କରିବି । ମୁଁ ଓ ଜଗତର ପ୍ରତ୍ୟେକ ବ୍ୟକ୍ତି ବା ବସ୍ତୁ, ସବୁ ସେହି ପରମଚୈତନ୍ୟର ବିଭିନ୍ନ ପ୍ରକାଶ ମାତ୍ର । ତେଣୁ ସେହି ପରମଚୈତନ୍ୟର ବିଭିନ୍ନ ପ୍ରକାଶକୁ ଭିନ୍ନଭିନ୍ନ ବୋଲି ଭାବି; ଶତ୍ରୁ, ମିତ୍ର, ପୁତ୍ର, ବନ୍ଧୁ ଇତ୍ୟାଦି ବିଭିନ୍ନ ନାମ ଦେଇ ତଥା ବିଭିନ୍ନ ବ୍ୟବହାର ଦେଖାଇ ନିଜର ସଞ୍ଚିତ ଶକ୍ତିର ଅପଚୟ ନ କରିବାକୁ ଏହି ଶ୍ଳୋକର ରଚୟିତା ସାଧକକୁ ଉପଦେଶ ଦେଇଅଛନ୍ତି ।

ସେ କହିଅଛନ୍ତି, ଯଦି ପୂର୍ଣ୍ଣାଙ୍ଗ ଜୀବନ ଉପଭୋଗ କରିବାକୁ ଚାହଁ, ଯଦି ତୁମେ ସେହି ମଧୁର ସମାବେଶର ମାଧୁର୍ଯ୍ୟପାନ ନିମନ୍ତେ ତୃଷାର୍ତ୍ତ, ଯଦି ତୁମେ ଜୀବନର ସାରତତ୍ତ୍ୱର ଆସ୍ୱାଦନ ନିମିତ୍ତ କ୍ଷୁଧାର୍ତ୍ତ, ତାହାହେଲେ ସେହି ବିଶ୍ୱାଧାର ଏକ ପରମ ସତ୍ୟକୁ ଉପଲବ୍ଧି କରିବା ନିମିତ୍ତ ପ୍ରାଣପଣେ ଲାଗିପଡ । 'ସୂତ୍ରେ ମଣିଗଣାଇବ' ପରି ନାମରୂପ ବହୁବିଧ ବିଶ୍ୱ ସେହି ଏକ ଚିନ୍ମୟସତ୍ତାରେ ପର୍ଯ୍ୟବସିତ । ବିଶ୍ୱ ଏକ ଶୃଙ୍ଖଳିତ ପରିପ୍ରକାଶ, ବିଶୃଙ୍ଖଳାର ସ୍ଥାନ ନାହିଁ । ବହୁବିଧ ପ୍ରକାଶ ଅତି ଶୃଙ୍ଖଳିତ ବୈଜ୍ଞାନିକ ପ୍ରଣାଳୀରେ ପରସ୍ପର ସହିତ ନିବିଡ ପ୍ରେମରେ ଆବଦ୍ଧ । ସୁତରାଂ ଜଗତର ବିଭିନ୍ନ ପ୍ରକାଶ ସହିତ ଭିନ୍ନ ଭିନ୍ନ ଭାବରେ ଅନୁଭବ କରିବା ଅର୍ଥ "ଏକମେବାଦ୍ୱିତୀୟମ୍"କୁ ଅବିଶ୍ୱାସ କରିବା ହିଁ ସାର ହେବ ।

ପ୍ରେମହୀନ ଶୁଷ୍କ ଜୀବନରେ ଘୃଣା, ନୀଚତା, କ୍ଷୁଦ୍ରମନା ଇତ୍ୟାଦି ଭାବନାଗୁଡିକ ଜୀବନକୁ ଜଞ୍ଜାଳମୟ ଓ ଦୁଃଖମୟ କରିଦିଅନ୍ତି । ହୃଦୟର ଦ୍ୱାର ଉନ୍ମୁକ୍ତ କର । ବିଶ୍ୱନିୟନ୍ତାଙ୍କର ସେହି ମଧୁର ମୁରଲୀର ଆହ୍ୱାନକୁ ଧ୍ୟାନର ସହିତ ଶୁଣ । ଦେଖ ସେ ତାଙ୍କର ମଧୁର ମୁରଲୀ ସ୍ୱରରେ ଆମ ସମସ୍ତଙ୍କୁ ପ୍ରେମ ପାଗଳ କରି ତାଙ୍କର ଚାରିପାଖେ ନଚାଉଅଛନ୍ତି । ବାସ୍ତବିକ ତାଙ୍କ ବ୍ୟତୀତ ଆଉ କେହି ନାହିଁ । ତୁମର ସକଳ ଧ୍ୟାନ ଓ ଧାରଣାକୁ ସେହି ମନମୋହନକାରୀ ମଧୁର ସଙ୍ଗୀତରେ ନିମଜ୍ଜିତ କର । ଲେଖକଙ୍କ ଭାଷାରେ, "ନିଜର ନିର୍ବୋଧତା ଜନିତ ବହୁବିଧ ଭାବନାରୁ ଦୂରେଇ ଯାଇ ସେହି ଏକ

ପରମଚୈତନ୍ୟକୁ ସବୁ କ୍ଷେତ୍ରରେ ଅନୁଭବ କର।" "ସର୍ବସ୍ମିନ୍ ଅପି ଆତ୍ମାନଂ ପଶ୍ୟ"।

ମୋର ଅଲିଅଳ ଛୁଆଟି ଯେତେବେଳେ କାଦୁଅମାଟିରେ ଜୁଡୁବୁଡୁ ହୋଇ ଅତି କଦାକାର ଭାବେ ମୋ ପାଖକୁ ଚାଲିଆସେ, ସେହି କାଦୁଅ ମାଟି ଜନିତ କଦାକାର ଭିତରେ କଣ ମୁଁ ମୋର ଅଲିଅଳ ଛୁଆଟିକୁ ଦେଖେ ନା? ପୁଣି ମୋର ସେହି ଛୁଆଟି ଯେତେବେଳେ ସଫାସୁତୁରା ହୋଇ ସୁନ୍ଦର ଭାବେ ସଜବାଜ ହୋଇ ବାହାରି ଆସେ, ସେହି ପୋଷାକ ଭିତର ଦେଇ ମୁଁ କ'ଣ ମୋ ଛୁଆଟିକୁ ଚିହ୍ନିପାରେ ନାହିଁ? ସେହିପରି ଗଭୀର ଧ୍ୟାନର ସହିତ ନିରୀକ୍ଷଣ କର, ଦେଖିବ ପ୍ରେମ, ଘୃଣା, ସୁଖ, ଦୁଃଖ ଇତ୍ୟାଦି ଭାବନା ବା ମାନସିକ ସ୍ଫୁରଣଗୁଡିକ ଏକ ଆଧାର (ମୂଳଦୁଆ) ଉପରେ ପର୍ଯ୍ୟବସିତ। ସେ ସମସ୍ତଙ୍କୁ ନେଇ ଏ ଜଗତର ସୃଷ୍ଟି।

ଯେ କୌଣସି ଭାଷାରେ ଗୀତ ଗାଇଲେ ସ୍ୱର ଜ୍ଞାନ ଥିବା ଲୋକ ସେ ଭାଷା ବୁଝି ନ ପାରିଲେ ମଧ୍ୟ ରାଗ ଓ ରାଗିଣୀର ମହତ୍ୱ ଉପଭୋଗ କରିପାରିବ। ସ୍ୱରର ମାଧୁର୍ଯ୍ୟ ଉପଭୋଗ କରିବା ପାଇଁ ଭାଷା ଜ୍ଞାନର ଆବଶ୍ୟକତା ଦରକାର ନାହିଁ, ବରଂ ଭାଷାଜ୍ଞାନ ଯୋଗୁଁ ଭାଷାର ଧାରଣା ରହି ସ୍ୱରର ମାଧୁର୍ଯ୍ୟ ଉପଭୋଗ କରି ହୁଏନାହିଁ। ସେହିପରି ରକ୍ତମାଂସ ଶରୀରର ପ୍ରତି ରକ୍ତ କଣିକାରେ, ମନ ଓ ତାର ଯନ୍ତ୍ରଣାଦାୟକ ସ୍ୱଭାବର ଅନ୍ତରାଳରେ, ବୁଦ୍ଧି ଓ ତାହାର ଚିରାଚରିତ ଅନୁଭୂତିର ପ୍ରତି ଛତ୍ରେ ଛତ୍ରେ, ଚିର ଶୋଭାମୟ ଅପରିବର୍ତ୍ତନୀୟ ସତ୍ୟ ବିଦ୍ୟମାନ। ସେହି ସୀମାହୀନ ଅପରିବର୍ତ୍ତନୀୟ ସତ୍ୟକୁ ଅନୁଭବ କର। ତୁମେ, ମୁଁ ଓ ସେମାନେ ଇତ୍ୟାଦି ଭାବର ବିଭିନ୍ନତାକୁ ଦୂରେଇ ଦିଅ। ନାମ ରୂପର ବିଭିନ୍ନତା, ଶରୀର, ମନ ଓ ବୁଦ୍ଧି ରୂପକ ବିଭିନ୍ନ ଯନ୍ତ୍ରର ବିଭିନ୍ନ ଆସ୍ୱାଦନ ମାତ୍ର; କିନ୍ତୁ ଏକ ଜୀବନୀଶକ୍ତି ସମସ୍ତଙ୍କୁ ଧରି ରଖିଛି।

ଯଦି ସଂସାରରେ କେହି ନିଜକୁ ଦୀନହୀନ ଦୁଃଖୀ, ପରିତ୍ୟକ୍ତା ବୋଲି ଭାବୁଥାଏ, ଏହା କେବଳ ତାହାରି ଦୋଷ, ଜଗତର ନୁହେଁ। ତେଣୁ ଗୀତାର ୬ଷ୍ଠ ଅଧ୍ୟାୟ ୫ମ ଶ୍ଳୋକରେ କୁହାଯାଇଛି, "ଆତ୍ମୈବ ହ୍ୟାତ୍ମନୋ ବନ୍ଧୁଃ ଆତ୍ମୈବ ରିପୁରାତ୍ମନଃ।" ଅର୍ଥାତ୍ ତୁମେ ନିଜେ ନିଜର ବନ୍ଧୁ, ପୁଣି ନିଜେ ନିଜର ଶତ୍ରୁ। ବାହାରର ଘଟଣାଗୁଡିକ ଆମ ଅନ୍ତରକୁ ଅସ୍ଥିର କରାନ୍ତି ନାହିଁ, କିନ୍ତୁ ଆମ ନିଜ ଅଜ୍ଞାତନା ଯୋଗୁଁ ସେ ସବୁ ବସ୍ତୁଗୁଡିକୁ ପ୍ରାଧାନ୍ୟ ଦେଉ ଓ ହୃଦୟର ଦ୍ୱାର ଉନ୍ମୁକ୍ତ କରିଦେଉ। ଫଳରେ ସେମାନେ ଆମ ହୃଦୟ ମନ୍ଦିରରେ ପ୍ରବେଶ କରି ଅତ୍ୟାଚାରର ତାଣ୍ଡବ ନୃତ୍ୟ କରନ୍ତି। ଆମେ ପ୍ରଥମେ ଘୃଣା କରୁ, ପରେ ଅନୁଭବ କରୁ ସତେ ଯେପରି ଚାରିଆଡୁ ଘୃଣା ଆମ ଉପରେ ଅଜାଡି ହୋଇ ପଡୁଛି। କିନ୍ତୁ ଯେଉଁ ମୁହୂର୍ତ୍ତରେ ହୃଦୟର ସହିତ ନିଷ୍କାପର ଭାବେ ବିନା ସର୍ତ୍ତରେ

ଭଲ ପାଇବା ଆରମ୍ଭ କରିଦେଉ, ଚାରିଆଡୁ ସେହିପରି ଭାବେ ପ୍ରେମ ଆମଠାରେ ଅଜାଡି ହୋଇପଡେ। ସୁତରାଂ ବାହାର ଜଗତରୁ ଆମେ ଆମର ପ୍ରତିଧ୍ୱନି ହିଁ ପାଇଥାଉ। ଆମେ ଅନ୍ୟ ମୁହଁରେ କେବଳ ଆମର ପ୍ରତିବିମ୍ବ ହିଁ ଦେଖୁ।

ସୁତରାଂ ବିଭିନ୍ନ ନାମ ଓ ରୂପ ମାଧ୍ୟମରେ ପ୍ରକାଶିତ ସେହି ଏକ ଚୈତନ୍ୟ ସତ୍ତାକୁ ଅନୁଭବ କରିବାକୁ ହେଲେ ଆମର ସ୍ୱଭାବ ଓ ଦୃଷ୍ଟିଶକ୍ତିକୁ ବଦଳାଇବାକୁ ହେବ। 'କଠ' ଉପନିଷଦରେ ଏହି ସତ୍ୟକୁ ଅତି ସରଳ ସୁନ୍ଦର ଭାବରେ ବୁଝାଇ ଦିଆଯାଇଛି। ସେଥିରେ ଅଛି ଯଥା-

"ଅଗ୍ନିର୍ଯଥୈକୋ ଭୁବନଂ ପ୍ରବିଷ୍ଟୋ ରୂପଂ ରୂପଂ ପ୍ରତିରୂପୋ ବଭୂବ।

ଏକସ୍ତଥା ସର୍ବଭୂତାନ୍ତରାତ୍ମା ରୂପଂ ରୂପଂ ପ୍ରତିରୂପୋ ବହିଶ୍ଚ।"(କଠ-୨:୨୯)

ଅର୍ଥାତ୍ ଏକ ଅଗ୍ନି ଛୋଟ ବଡ ବା ବିଭିନ୍ନ ବଳିତାରେ ଜଳି ବିଭିନ୍ନ ପ୍ରକାରର ଆଲୋକ ଦେଖାଏ। ସେହିପରି ଏକ ଆତ୍ମା ବା ଆତ୍ମଚୈତନ୍ୟ ବିଭିନ୍ନ ହୃଦୟରେ ବିଭିନ୍ନ ଭାବରେ ପ୍ରକାଶିତ ହେଉଛି।

ପୁଣି 'ଈଶାବାସ୍ୟ-୬' ଉପନିଷଦରେ କୁହାଯାଇଛି "ତତୋ ନ ବିଜୁଗୁପ୍ସତେ"- ଅର୍ଥାତ୍ ଥରେ ମାତ୍ର ବିଶ୍ୱାଧାର ପରମଚୈତନ୍ୟର ଅନୁଭୂତି ଆସିଲେ କୌଣସି କ୍ଷେତ୍ରରେ ତାହାର ଅନ୍ୟ କୌଣସି ପରିବର୍ତ୍ତନରେ ବିଚ୍ୟୁତି ବା ସ୍ଖଳନ ହେବ ନାହିଁ।

ଅବସ୍ଥା ସହିତ ନିଜକୁ ଖାପ ଖୁଆଇ ନପାରିବା ହେତୁ ଆମ ହୃଦୟମଧ୍ୟରେ ପାର୍ଥକ୍ୟ ଦେଖାଦିଏ। ସେହି ପାର୍ଥକ୍ୟକୁ ସନ୍ଦେହ ବା ଜୁଗୁପ୍ସା କହନ୍ତି। ମା' ଯେପରି ନିଜର ଛୁଆକୁ ନିଜର ନୁହେଁ ବୋଲି ସନ୍ଦେହ କରେନା (କାରଣ ଛୁଆଟି ମା'ର ଜୀବନର ଏକ ଅଂଶ ବୋଲି ଧରି ନେଇଥାଏ), ସେହିପରି ଯେ "ସକଳରେ ମୁହିଁ, ମୋ ମଧ୍ୟେ ସକଳ" ବୋଲି ଧରି ନେଇଥାଏ, ସେଠାରେ ଆଉ ଜୁଗୁପ୍ସା ନ ଥାଏ। ଈଶାବାସ୍ୟ ଉପନିଷଦ ଆହୁରି ପାଦେ ଆଗେଇ ଯାଇ କହିଛି,

"ତତ୍ର କୋ ମୋହଃ, କଃ ଶୋକ ଏକତ୍ୱଂ ଅନୁପଶ୍ୟତଃ।" (ଈଶା-୭)

ଅର୍ଥାତ୍ ଯେତେବେଳେ ସର୍ବତ୍ର ସର୍ବଦା ଏକର ଅନୁଭୂତି ଆସିବ, ସେତେବେଳେ ଭ୍ରମ ଓ ଦୁଃଖର ସ୍ଥାନ କାହିଁ?

**କାମଂ କ୍ରୋଧଂ ଲୋଭଂ ମୋହଂ**
**ତ୍ୟକ୍ତ୍ୱାଽତ୍ମାନଂ ପଶ୍ୟତି ସୋଽହମ୍‌।**
**ଆତ୍ମଜ୍ଞାନ-ବିହୀନା ମୂଢ଼ାସ୍ତେ**
**ପଚ୍ୟନ୍ତେ ନରକନିଗୂଢ଼ାଃ ॥୨୬॥**
**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

କାମଂ = ବାସନା, କ୍ରୋଧଂ = କ୍ରୋଧ, ଲୋଭଂ = ଲୋଭ, ମୋହଂ = ଭ୍ରମ, ତ୍ୟକ୍ତ୍ୱା = ତ୍ୟାଗ କରି, ଆତ୍ମାନଂ = ଆତ୍ମାକୁ, ପଶ୍ୟତି = ଦେଖନ୍ତି, ସଃ ଅହମ୍ = 'ସେ ହିଁ ମୁଁ' ଏହି ଭାବରେ, ଆତ୍ମଜ୍ଞାନ ବିହୀନାଃ = ଯେଉଁମାନଙ୍କର ଆତ୍ମଜ୍ଞାନ ନାହିଁ, ମୂଢ଼ାଃ = ମୂର୍ଖ ଲୋକମାନେ, ତେ = ସେମାନେ, ପଚ୍ୟନ୍ତେ = ଯନ୍ତ୍ରଣା ଭୋଗ କରନ୍ତି, ନରକ ନିଗୂଢ଼ାଃ = ନରକରେ ପଡି, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ।

*୨୬. କାମ, କ୍ରୋଧ, ଲୋଭ ଓ ମୋହକୁ ପରିତ୍ୟାଗ କରି ସାଧକ ସମସ୍ତ ଜଗତକୁ ନିଜ ମଧ୍ୟରେ ଦେଖିପାରେ। କିନ୍ତୁ ଆତ୍ମଜ୍ଞାନ ବିହୀନ ଲୋକେ ତାହା ଦେଖି ନ ପାରି ନରକରେ ପଡି ନାନା ଯନ୍ତ୍ରଣା ଭୋଗ କରନ୍ତି।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

କେଉଁ ଅବସ୍ଥାରେ ସାଧକ ଈଶ୍ୱରାନୁଭୂତି ବା ଆତ୍ମା ଅନୁଭୂତି ଲାଭକରେ ତାହା ଏଠାରେ କବି ଭାରତୀବଂଶ ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଅଛନ୍ତି।

ଯେଉଁ ପର୍ଯ୍ୟନ୍ତ ଆମେ ନିଜର ଚିତ୍ତଚାଞ୍ଚଲ୍ୟରୁ ନିଜକୁ ରକ୍ଷା କରିପାରି ନାହୁଁ, ବହିର୍ମୁଖୀ ଇନ୍ଦ୍ରିୟମାନଙ୍କ ଦ୍ୱାରା ପରିଚାଳିତ ହେଉଅଛୁ, ସେ ପର୍ଯ୍ୟନ୍ତ ଆମେ କେବେହେଲେ ସେହି ଚିରଶାନ୍ତିମୟ ଆନନ୍ଦଧାମରେ ପହଞ୍ଚି ପାରିବା ନାହିଁ। ତେଣୁ ଆଚାର୍ଯ୍ୟ କହୁଅଛନ୍ତି ଯେ କାମ, କ୍ରୋଧ, ଲୋଭ ଓ ମୋହ ଇତ୍ୟାଦିକୁ ତ୍ୟାଗକରି ଅନ୍ତର୍ନିହିତ ଶୁଦ୍ଧପୂତ ଆନନ୍ଦକୁ ଅନୁଭବ କରିବା ପାଇଁ ଅତି ଆଗ୍ରହର ସହିତ ଉଦ୍ୟମ କରିବା ଉଚିତ୍। ଏହି ପ୍ରକାର ଯେଉଁ ସାଧକ ଜୀବନର ପ୍ରକୃତ ମାଧୁର୍ଯ୍ୟକୁ ଉପଲବ୍ଧି କରେ, ସେ ହିଁ ପ୍ରକୃତ ସତ୍ୟକୁ ଅନୁଭବରେ ଆଣେ; କିନ୍ତୁ ଆମେ ଜଗତକୁ ସାଧାରଣ ଭାବରେ ଯେପରି ବୁଝିଥାଉ ତାହାକୁ ପ୍ରକୃତ ଅନୁଭୂତି କୁହାଯାଏନା।

ବାହ୍ୟ ଜଗତର ଜ୍ଞାନ ବସ୍ତୁକୈନ୍ଦ୍ରିକ। ତେଣୁ ଜଗତର ବିଷୟବସ୍ତୁ ସକଳ ଆମ ନିଜଠାରୁ ଭିନ୍ନ ବୋଲି ଧରି ନେଇଥାଉ। କିନ୍ତୁ ଆତ୍ମଜ୍ଞାନ ଲାଭ କଲାପରେ ନିଜ ବିଷୟରେ

ଥିବା ଭ୍ରାନ୍ତ ଧାରଣା ଦୂର ହୋଇଯାଏ ଏବଂ 'ସୋ ଅହଂ' ବା 'ସେ ମୁଁ' ବା 'ମୁଁ ସେ' ବା 'ତଦସ୍ମି' ଏହି ଭାବ ଆସେ। ପକେଟ୍ ଭିତରେ ଚାବିକାଠି ରଖି ଚାରିଆଡେ ଖୋଜି ଖୋଜି ଶେଷରେ ନିଜ ପକେଟ୍‌ରେ ଚାବିକୁ ପାଇବା ପରି ଆତ୍ମଚୈତନ୍ୟକୁ ଚାରିଆଡେ ଅନୁସନ୍ଧାନ କରି ଶେଷରେ ନିଜେ ହିଁ ଆତ୍ମଚୈତନ୍ୟ ବୋଲି ଅନୁଭବରେ ଆଣେ। ଚାବିପାଇବା ପରେ ଚାବି ପାଇଗଲି ବୋଲି ସେ କହୁଥାଏ, କିନ୍ତୁ ପ୍ରକୃତରେ ଚାବି ନିଜ ପକେଟ୍‌ରେ ଥାଏ। ତାହା ସେ ଜାଣି ନ ଥାଏ। ଚାବିର ସ୍ଥିତି ବିଷୟରେ ଜ୍ଞାନଲାଭ ପରେ ଆଉ ଖୋଜିବା ଦରକାର ହୁଏନାହିଁ। ଚାବି ପେଣ୍ଟା ପରି ଆତ୍ମଚୈତନ୍ୟର ସ୍ଥିତିକୁ ନିଜ ଭିତରେ ଅଜ୍ଞାନତା ଯୋଗୁଁ ଅନୁଭବ କରି ନ ପାରି ଏଣେତେଣେ ଖୋଜି ବୁଲୁଥାଏ।

ସେହିପରି ପରମ ଶାନ୍ତି ହିଁ ମନୁଷ୍ୟର ପ୍ରକୃତ ସ୍ୱଭାବ। କେବଳ କାମ, କ୍ରୋଧ, ଲୋଭ ଓ ମୋହ ଯୋଗୁଁ ନିଜର ଶାନ୍ତ ସ୍ୱଭାବକୁ ଅନୁଭବ କରିପାରେ ନାହିଁ, କିନ୍ତୁ ଯେତେବେଳେ ତାହାର ଚାଞ୍ଚଲ୍ୟଗୁଡିକ ଶାନ୍ତ ହୋଇଯାଆନ୍ତି, ଶାନ୍ତ ସ୍ୱଭାବ ଆପେ ଆପେ ପହଞ୍ଚିଯାଇଥାଏ।

କ୍ରୋଧରେ ଅଧୀର ହୋଇ ବିକ୍ଷିପ୍ତ ମନରେ ରାଧା ଯେତେବେଳେ ଯମୁନାକୂଳସ୍ଥ ବୃକ୍ଷମୂଳରେ ଶ୍ରୀକୃଷ୍ଣଙ୍କର ଅପେକ୍ଷାରେ ରହି ଅଛନ୍ତି, ସେତେବେଳେ ପେଶୀଯୁକ୍ତ ବଳିଷ୍ଠ ହସ୍ତ ଦୁଇଟି ପଛପଟୁ ଆସି ରାଧାଙ୍କର ଆଖିକୁ ଅତି ଧୀରେ ବନ୍ଦ କରିବାରୁ ରାଧା ଭୟଭୀତ ହୋଇଯାଇଛନ୍ତି, ରାଗିଯାଇଛନ୍ତି, ବ୍ୟସ୍ତହୋଇ ଉଠିଛନ୍ତି, ସେହି ହାତକୁ ଖୁବ୍ ଜୋରରେ ଧରିଛନ୍ତି, ଆଖିରୁ ହାତକୁ ଛଡାଇ ନେବାପାଇଁ ଖୁବ୍ ବଳ ଖର୍ଚ୍ଚ କରିଛନ୍ତି। ଝାଳନାଳ ହୋଇପଡି ଶେଷରେ ଯେତେବେଳେ ଅନୁଭବ କରିଛନ୍ତି ଯେ ସେହି ହାତ ଆଉ କାହାରି ନୁହେଁ, ତାଙ୍କର ଚିରଈପ୍ସିତ ପ୍ରାଣପ୍ରିୟ ଶ୍ରୀକୃଷ୍ଣଙ୍କର, ଯାହାଙ୍କ ପାଇଁ ସେ ଅଧୀରା ହୋଇ ଅପେକ୍ଷା କରି ରହିଥିଲେ, ସେତେବେଳେ ସେ ପରମାନନ୍ଦ ଲାଭ କରିଛନ୍ତି। ଅର୍ଥାତ୍ ଅଧୀରତା ଦୂର ହୋଇଗଲେ ଚିରଶାନ୍ତି ଆପେ ଆପେ ହୃଦୟ କନ୍ଦରରେ ବିରାଜମାନ କରେ।

କିନ୍ତୁ ଯେଉଁଲୋକ ଏହି ଆତ୍ମଜ୍ଞାନ ଲାଭ ନ କରିଛି, ଯାହାର ଏହି ପୂର୍ଣ୍ଣାଙ୍ଗ ଅନୁଭୂତି ଆସିନାହିଁ, ସେହି ଲୋକ ନିଜର ଅଜ୍ଞାନଜନିତ ଅସରନ୍ତି ବାସନା ଓ ଅସଂଖ୍ୟ କାମନାରେ ବୁଡୁବୁଡୁ ହୋଇ ଦୁଃଖ ଯନ୍ତ୍ରଣାରେ ଜୀବନ କଟାଏ। ବାସ୍ତବରେ ସେହି ଲୋକଟି ମୂଢ଼ ଶିରୋମଣି। ପ୍ରକୃତ ସତ୍ୟକୁ ହୃଦୟଙ୍ଗମ କରି ନ ପାରି ଅଜ୍ଞାନତା ଯୋଗୁଁ ଭୁଲ୍ ବୁଝାମଣାରେ ସଢ଼ିଯାଇ କାମ, କ୍ରୋଧ, ଲୋଭ, ମୋହ ଇତ୍ୟାଦିର କବଳରେ

ପଡି ଅହରହ ଯନ୍ତ୍ରଣା ଭୋଗ କରେ। କାମନା ବାସନା ଇତ୍ୟାଦିର ଅତ୍ୟାଚାରରେ ପ୍ରପୀଡିତ ହୋଇ ନିଜକୁ ନରକର କୀଟ ବୋଲି ମନେକରେ। କିନ୍ତୁ ଏହି ଭୁଲବୁଝାମଣା ଜନିତ ଯନ୍ତ୍ରଣା ସେ ନିଜ ପାଇଁ ନିଜେ ସୃଷ୍ଟି କରିଥାଏ।

ଏହି ଶ୍ଳୋକଟିକୁ ବୁଝିବା ସମୟରେ ଶଙ୍କରଙ୍କର ଆଉ ଗୋଟିଏ ଶ୍ଳୋକ ମନେ ପଡୁଛି। ସେଥିରେ ସେ କହିଛନ୍ତି।

**କାମଃ କ୍ରୋଧଶ୍ଚ ଲୋଭଶ୍ଚ ଦେହେ ତିଷ୍ଠନ୍ତି ତସ୍କରାଃ।**

**ଜ୍ଞାନରତ୍ନାପହାରାୟ ତସ୍ମାଦ୍ ଜାଗ୍ରତ ଜାଗ୍ରତ।।**

(ବୈରାଗ୍ୟ ଡିଣ୍ଡିମ - ୧)

ଅର୍ଥାତ୍ କାମ, କ୍ରୋଧ ଓ ଲୋଭ ଇତ୍ୟାଦି ତସ୍କରଗଣ ଶରୀର ମଧ୍ୟରେ ଜ୍ଞାନରୂପ ମଣିମାଣିକ୍ୟକୁ ଲୁଟ୍ କରିବା ନିମିତ୍ତ ସର୍ବଦା ପ୍ରସ୍ତୁତ। ସେଥିପାଇଁ ସାବଧାନ ହୁଅ, ସାବଧାନ ହୁଅ।

ମୋଟାମୋଟି କହିବାକୁ ଗଲେ କାମ, କ୍ରୋଧ ଓ ଲୋଭ ଇତ୍ୟାଦିକୁ ତ୍ୟାଗକରି 'ସୋଽହଂ'ରୂପକ ଆତ୍ମଜ୍ଞାନ ଅନୁଭବ ନିମିତ୍ତ ଲାଗିପଡ। ତାହାହିଁ ଏକମାତ୍ର ପରମ ଓ ଚରମ ଲକ୍ଷ୍ୟ। ପ୍ରକୃତରେ ସର୍ବତ୍ର ଭଗବାନ ହିଁ ବିରାଜିତ। 'ମୁଁ' ବା 'ମୁଁ'ତ୍ୱ କେବଳ ନିର୍ବୋଧତା ବା ଦିବାସ୍ୱପ୍ନ। ସେହି 'ମୁଁ' ତ୍ୱ କୁ ତାଙ୍କରି ପାଦପଦ୍ମରେ ସମର୍ପଣ କରି ଦିବ୍ୟସତ୍ତାକୁ ଅନୁଭବ କର। ଉପଯୁକ୍ତ ବିଶ୍ଳେଷଣ ଦ୍ୱାରା; ଯାହା ତୁମେ ନୁହଁ, ତାହା ଦୂରକରି ସେହି ସର୍ବବ୍ୟାପୀ ଏକ ସତ୍ୟକୁ ତୁମ ନିଜଠାରେ ଓ ଚାରିଦିଗରେ ଅନୁଭବ କର।

**ଗେୟଂ ଗୀତାନାମସହସ୍ରଂ**

**ଧ୍ୟେୟଂ ଶ୍ରୀପତିରୂପମଜସ୍ରମ୍ ।**

**ନେୟଂ ସଜ୍ଜନସଙ୍ଗେ ଚିତ୍ତଂ**

**ଦେୟଂ ଦୀନଜନାୟ ଚ ବିତ୍ତମ୍ ॥୨୭॥**

**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

ଗେୟଂ = ଗାଇବାର କଥା, ଗୀତା = ଭଗବତ୍ ଗୀତା, ନାମସହସ୍ରମ୍ = ସହସ୍ର ନାମ, ଧ୍ୟେୟଂ = ଧ୍ୟାନ କରିବାର କଥା, ଶ୍ରୀପତି ରୂପଂ = ଶ୍ରୀପତିଙ୍କର ରୂପକୁ, ଅଜସ୍ରଂ = ସର୍ବଦା, ନେୟଂ = ମନକୁ ସବୁବେଳେ ସଜାଅ, ସଜ୍ଜନ-ସଙ୍ଗେ = ସଜ୍ଜନ ସଙ୍ଗରେ, ଚିତ୍ତଂ = ହୃଦୟକୁ, ଦେୟଂ = ଦେବାର କଥା, ଦୀନଜନାୟ ଚ = ଅଭାବଗ୍ରସ୍ତ ଲୋକଙ୍କୁ, ବିତ୍ତମ୍ = ସମ୍ପତ୍ତି, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ ।

*୨୭. ଗୀତ ଗାଇବ ତ କେବଳ ଭଗବତ୍ ଗୀତା ଓ ବିଷ୍ଣୁ ସହସ୍ର ନାମ ଗାଇବ । ଧ୍ୟାନ କରିବ ତ ଶ୍ରୀପତିଙ୍କୁ ଅହରହ ଧ୍ୟାନକରିବ । ମନ ଲଗାଇବ ତ କେବଳ ସାଧୁ ସନ୍ଥମାନଙ୍କ ସଙ୍ଗରେ ଲଗାଇବ ଓ ଧନ ବିତରଣ କରିବ ତ କେବଳ ଅଭାବଗ୍ରସ୍ତଙ୍କୁ ବିତରଣ କରିବ ।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ଏହି ଶ୍ଳୋକଦ୍ୱାରା ଚତୁର୍ଦ୍ଦଶ ମଞ୍ଜରିକା ସ୍ତୋତ୍ରର ସମାପ୍ତି କରାଯାଇଛି । ଶଙ୍କରଙ୍କର କାଶୀଯାତ୍ରା ସମୟରେ ସଙ୍ଗରେ ଥିବା ଚଉଦଜଣ ଶିଷ୍ୟମାନଙ୍କ ମଧ୍ୟରୁ ଶେଷ ଶିଷ୍ୟ ଜଣକ ଏହା ଲେଖିଛନ୍ତି । ତାଙ୍କର ନାମ ଶ୍ରୀ ସୁମତି ।

ଯେତେବେଳେ କୌଣସି ସାଧକ ଚରମ ଅନୁଭୂତି ବା ଆତ୍ମ ଅନୁଭୂତି ଲାଭର ଆବଶ୍ୟକତା ଅନୁଭବ କରିପାରିବ, ସେତେବେଳେ ତାହାକୁ କ'ଣ କରିବାକୁ ହେବ, ଏହି ଶ୍ଳୋକରେ ସୁନ୍ଦର ଭାବରେ ତାହାର ଅବତାରଣା କରାଯାଇଛି ।

ସମସ୍ତ ଆଧ୍ୟାତ୍ମିକ ଗୁରୁମାନଙ୍କର ଉପଦେଶମୟୀ ଭାଷା ଏକ ପ୍ରକାରର । କିନ୍ତୁ ସେଗୁଡିକର ପ୍ରକୃତ ତତ୍ତ୍ୱ ବୁଝିବା ପାଇଁ ଶିଷ୍ୟଗଣ କ୍ୱଚିତ୍ ଚେଷ୍ଟା କରିଥାନ୍ତି । ଏଠାରେ ଦିଆଯାଇଥିବା ଉପଦେଶର ମଧ୍ୟ ନୂତନତ୍ୱ ନାହିଁ । ପ୍ରତିଦିନର ନୈମିତ୍ତିକ ଚାରୋଟି କର୍ମର ସୂଚୀ ଦିଆଯାଇଛି ମାତ୍ର । ଯଥା:- (୧) ଗୀତାପାଠ ଓ ବିଷ୍ଣୁ ସହସ୍ର ନାମ ସ୍ତୋତ୍ର ପାଠ, (୨) ନାରାୟଣ ପୂଜା, (୩) ସତ୍ସଙ୍ଗ, (୪) ଦରିଦ୍ରଙ୍କୁ ଦାନ ।

ଗୀତା, ସମସ୍ତ ଉପନିଷଦ୍‌ର ସଂକ୍ଷିପ୍ତ ସାରତତ୍ତ୍ୱ। ମନୁଷ୍ୟ ତାହାର ଦୈନନ୍ଦିନ ଜୀବନରେ କିପରି ଭାବରେ ସେହି ସାରତତ୍ତ୍ୱଗୁଡ଼ିକ ଲଗାଇ ପାରିବ, ତାହା ହିଁ କୁହାଯାଇଛି। ତେଣୁ ଗୀତାକୁ ଧ୍ୟାନ ସହିତ ମନଯୋଗ ପୂର୍ବକ ପାଠକଲେ ଆମର ଜୀବନ ସମ୍ପର୍କରେ ଓ ଜୀବନ ସହ ଜଡ଼ିତ ସଂସାରର ସମସ୍ତ ବିଷୟବସ୍ତୁ ସହିତ ଆମର ସମ୍ପର୍କ କିପରି ହେବ ତାହା ବୁଝିବା। ଗୀତାରେ ଥିବା ଉପଦେଶଗୁଡ଼ିକ ଜୀବନର ଲକ୍ଷ୍ୟ ଓ ସେହି ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ନିମିତ୍ତ ଉପାୟ ବା ରାସ୍ତା ବତାଇଦିଏ ଏବଂ ଦୈନନ୍ଦିନ ଜୀବନରେ ଜୀବନ୍ତ ଧର୍ମ ଅନୁସରଣର ବିଭିନ୍ନ ଉପାୟ ମଧ୍ୟ କହିଥାଏ।

ଶାସ୍ତ୍ରପାଠରେ ସାଧକର ଆତ୍ମ ବିକାଶ ନ ହେଲେ ମଧ୍ୟ ଉପଯୁକ୍ତ ଜ୍ଞାନ ଅର୍ଜନ ନିମିତ୍ତ ଶାସ୍ତ୍ର ପାଠ ଏକାନ୍ତ ଆବଶ୍ୟକ। ଗୀତା ଶାସ୍ତ୍ରରେ ଥିବା ଉପଦେଶଗୁଡ଼ିକ ଖୁବ୍ ଯୁକ୍ତିଯୁକ୍ତ ଓ ପସନ୍ଦ ଯୋଗ୍ୟ ହେଲେ ମଧ୍ୟ ସେଗୁଡ଼ିକ ଦୈନନ୍ଦିନ କର୍ମ ମାଧ୍ୟମରେ କାର୍ଯ୍ୟରେ ପରିଣତ ନ କଲେ ଉପଦେଶର ମହତ୍ତ୍ୱ ଉପଲବ୍ଧି ହୁଏନାହିଁ। ଦର୍ଶନ ଆଦର୍ଶର ଅବତାରଣା କରେ, ବିଚାର ଧାରାକୁ ନାନା ଯୁକ୍ତି ଦେଇ ପରିପୁଷ୍ଟ କରେ। ପରିଣାମରେ ଦାର୍ଶନିକ ଚିନ୍ତାଧାରାକୁ ବୁଝିବା ନିମିତ୍ତ ସାହାଯ୍ୟ କରେ।

କିନ୍ତୁ ସେହି ଦର୍ଶନ ଶାସ୍ତ୍ର ଅନୁଯାୟୀ ଜୀବନ ଯାପନ ନ କଲେ ଦର୍ଶନର ମହତ୍ତ୍ୱଗୁଡ଼ିକ ଆଦୌ ଉପଲବ୍ଧିରେ ଆସନ୍ତି ନାହିଁ। ପ୍ରତ୍ୟେକ ମାନବର ଦୈନନ୍ଦିନ ଜୀବନରେ ଶାସ୍ତ୍ରର ନୀତି ଓ ନିୟମକୁ କିପରି ମାନି ଚଳିବାକୁ ହେବ, ତାହାହିଁ ପ୍ରତ୍ୟେକ ଧର୍ମର ସାରତତ୍ତ୍ୱ। ସୁତରାଂ ପୁରା କାଳର ମହର୍ଷିଗଣ ବା ଆଧୁନିକ ଯୁଗରେ ବିବେକାନନ୍ଦଙ୍କ ପରି ମନୀଷୀଗଣ ସବୁବେଳେ କହି ଆସିଛନ୍ତି "ଦର୍ଶନ ବା ଆଦର୍ଶ ବିହୀନ ଧର୍ମ କୁସଂସ୍କାର, ବା ଧର୍ମବିହୀନ ଦର୍ଶନ ପାଗଳର ସ୍ୱପ୍ନ ଅଟେ।"

ଯେତେବେଳେ ଜଣେ ସାଧକ ଗୀତା ପାଠକରେ, ତାହାର ଗୂଢ଼ ରହସ୍ୟ ହୃଦୟଙ୍ଗମ କରେ, ସେତେବେଳେ ସେ ତଦନୁଯାୟୀ ଜୀବନ ନିର୍ବାହ କରି ନିଜକୁ ଶୁଦ୍ଧପୂତ କରେ। ଏହି ପ୍ରକାର କର୍ମ କେବଳ ଧର୍ମ ମାଧ୍ୟମରେ କରାଯାଏ। ବିଷ୍ଣୁଙ୍କର ସହସ୍ର ନାମ ଜପ ରୂପକ ଧର୍ମ ମାଧ୍ୟମରେ କରାଯାଏ ବୋଲି ଏଠାରେ ସୂଚାଇ ଦିଆଯାଇଛି। ଅର୍ଥାତ୍ ବିଷ୍ଣୁଙ୍କର ସହସ୍ର ନାମକୁ ଜପ ଓ ତାଙ୍କର ଗୁଣ ସ୍ମରଣରେ ମନ ସବୁବେଳେ ତାଙ୍କରି ନିକଟରେ ଥାଏ, ଆମେ ସେତେବେଳେ ନିଜର ଅହମିକା ଭାବକୁ ଭୁଲିଯାଇଥାଉ। ଅହଂ ଭାବ ଦୂରେଇ ଯିବା ଫଳରେ ମନର ଚାଞ୍ଚଲ୍ୟ ଦୂରେଇ ଯାଏ ଓ ଆସ୍ତେ ଆସ୍ତେ ମନ ମହତ୍ ଭାବନାରେ ରତ ହୋଇଥାଏ। ସୁତରାଂ ମନ ଶ୍ରୀପତିଙ୍କର ପବିତ୍ର ଗୁଣରେ ମୁଗ୍ଧ ହୋଇ ସେଥିରେ ବୁଡ଼ି ରହିଥାଏ।

ହୃଦୟ କନ୍ଦରରେ ଥରେ ମାତ୍ର ଅହଂଭାବ ଜନିତ ଉତ୍ତେଜନା ସୃଷ୍ଟିହେଲେ ଆମର ସମସ୍ତ ପ୍ରକାର ଭଜନ କୀର୍ତ୍ତନ ଓ ଶାସ୍ତ୍ର ଅଧ୍ୟୟନର ଫଳାଫଳ ବା ଶାନ୍ତି କେଉଁଆଡେ ଉଡିଯାଏ। ଏହି ପ୍ରକାର ଆକସ୍ମିକ ଝଡ-ତୋଫାନରୁ ରକ୍ଷା ପାଇବା ନିମିତ୍ତ "ନେୟଂ ସଜ୍ଜନ ସଙ୍ଗେ ଚିତ୍ତଂ" ଏକାନ୍ତ ଆବଶ୍ୟକ। ସାଧୁସନ୍ଥ ମେଳରେ ରହି ସେମାନଙ୍କର ମଧୁମୟବାଣୀ ଶୁଣି ସେମାନଙ୍କର ଭାବଧାରାରେ ନିଜକୁ ସର୍ବଦା ମଜାଇ ପାରିଲେ ନିଜର ମହତ୍ ଆଦର୍ଶରେ ରହିପାରିବା।

ସତ୍‌ସଙ୍ଗରେ ବା ସଜ୍ଜନ ମେଳରେ ରହି ସେହି ଭାବଧାରାରେ ଜୀବନ ବିତାଇବା ଫଳରେ ମନରେ ପବିତ୍ରଭାବ ଜାତ ହୁଏ; ଭୟ, ବିତୃଷ୍ଣା, ହତାଶଭାବ ମନରେ ପ୍ରବେଶ କରିପାରନ୍ତି ନାହିଁ। ତା'ପରେ ସାଧୁସନ୍ଥ ମେଳରେ ଶାସ୍ତ୍ରର ନାନା ଗୂଢ଼ ରହସ୍ୟ ବୁଝିବା ପାଇଁ ସୁବିଧା ମିଳେ। ଭକ୍ତି ଓ ନିଷ୍ଠା ଦୃଢ଼ ହୁଏ।

ଜଣେ ଲୋକ ଗୀତା ପାଠ କରୁ, ଶାସ୍ତ୍ର ଅନୁଯାୟୀ ଜୀବନ ନିର୍ବାହ କରୁ, ସତ୍‌ସଙ୍ଗରେ ଦିନ କଟାଉ, ଯଦି ସେ ଦୈନନ୍ଦିନ ଜୀବନରେ ସଂସାରରେ ରହି, ପରିବାର, ପଡୋଶୀ ଓ ଦେଶବାସୀଙ୍କ ଭିତରେ ନିଜକୁ ଆନନ୍ଦରେ ମିଶାଇ ଦେଇ ନ ପାରେ, ସେ କେବେହେଲେ ଏହି ପ୍ରକାର ଆତ୍ମ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇପାରିବ ନାହିଁ। କାରଣ ମୋ ହୃଦୟ ବିହାରୀ ହିଁ ସର୍ବ ହୃଦୟରେ ବିରାଜିତ। ମୁଁ ଯଦି ସର୍ବହୃଦୟସ୍ଥ ସେହି ପରମାନନ୍ଦଙ୍କୁ ଉପଯୁକ୍ତ ସମ୍ମାନ ନ ଦେଖାଇ କେବଳ ଏକ ନିର୍ଜୀବ ପଥର ବା କାଠମୂର୍ତ୍ତି ଉପରେ ଫୁଲଚନ୍ଦନ ଦେଇ ପୂଜାକରେ, ତାହାହେଲେ ମୁଁ ପ୍ରକୃତରେ ନିଷ୍ଠାପର ଭକ୍ତ ନୁହେଁ।

ତେଣୁ ଆଚାର୍ଯ୍ୟ ଏଠାରେ କହିଛନ୍ତି "ଦେୟଂ ଦୀନଜନାୟ ଚ ବିତ୍ତମ୍"। ଏହି ଦେୟଂ ବା ଦାନ କଥାକୁ ବହୁ ଦାନୀ ବି ଭୁଲ ଭାବରେ ବୁଝନ୍ତି। ସେମାନଙ୍କ ମତରେ ନିଜର ବହୁତ ଥିଲେ, ସେଥିରୁ ଦାନ କରିବାକୁ ପଡିବ। ତେଣୁ ଦାନ କରିବା ନିମିତ୍ତ ବିଭିନ୍ନ ଉପାୟରେ ବହୁ ଉପାର୍ଜନ କରନ୍ତି।

କିନ୍ତୁ ଦାନର ପ୍ରକୃତ ଅର୍ଥ ହେଉଛି, ଅନ୍ୟର ଅଭାବ ଓ ଅସୁବିଧାକୁ ମୋ ନିଜର ଅଭାବ ଓ ଅସୁବିଧା ବୋଲି ଭାବିନେଇ ନିଜର ଅଭାବ ଓ ଅସୁବିଧା ଦୂର ନିମିତ୍ତ ଯେପରି କାମ କରାଯାଏ, ସେହିପରି ଅନ୍ୟର ଅଭାବ ଓ ଅସୁବିଧା ଦୂର କରିବା ନିମିତ୍ତ ମନ ଓ ଧ୍ୟାନ ଦେବା। ମୋ ଚାରିପାଖରେ ଥିବା ଜ୍ଞାତି ପରିଜନଙ୍କୁ ନିଜର ବୋଲି ଭାବି କାର୍ଯ୍ୟ କଲେ କ୍ଷୁଦ୍ର ନୀଚ ଆତ୍ମସ୍ୱାର୍ଥଭାବ ଧୀରେ ଧୀରେ ଦୂର ହୋଇଯିବ। ଅନ୍ୟମାନଙ୍କର ଅଭାବ ଓ ଅସୁବିଧା ପ୍ରତି ଆଖି ବୁଜିଦେବା ପ୍ରକୃତରେ

ଧର୍ମ ନୁହେଁ । ସମସ୍ତଙ୍କୁ ଭାତୃପ୍ରେମରେ ଆବଦ୍ଧ ରଖି ଜୀବନଯାପନ କଲେ ପ୍ରକୃତ ଧର୍ମର ବିକାଶ ହେବ ।

**ସୁଖତଃ କ୍ରିୟତେ ରାମାଭୋଗଃ**

**ପଶ୍ଚାତ୍‌ହନ୍ତ ଶରୀରେ ରୋଗଃ ।**

**ଯଦ୍ୟପି ଲୋକେ ମରଣଂ ଶରଣଂ**

**ତଦପି ନ ମୁଞ୍ଚତି ପାପାଚରଣମ୍ ॥୨୮॥**

**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

ସୁଖତଃ = ସୁଖ ନିମିତ୍ତ, କ୍ରିୟତେ = କାର୍ଯ୍ୟରେ ଯେ ମଜ୍ଜି ରହେ, ରାମାଭୋଗଃ = ରକ୍ତମାଂସର ତୃପ୍ତି ବା ଆମୋଦ, ପଶ୍ଚାତ୍ = ପଛରେ, ହନ୍ତ = ହାୟ, ଶରୀରେ = ଶରୀରରେ । ରୋଗଃ = ରୋଗ ହୁଏ, ଯଦ୍ୟପି = ଯଦିଓ । ଲୋକେ = ସଂସାରରେ । ମରଣଂ = ମରଣ, ଶରଣ = (ହିଁ) ନିଶ୍ଚିତ ସମାପ୍ତି । ତଦପି = ତଥାପି, ନ = ନାହିଁ, ମୁଞ୍ଚତି = ତ୍ୟାଗ କରେ, ପାପ-ଆଚରଣମ୍= ମନ୍ଦ କାର୍ଯ୍ୟକୁ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ ।

*୨୮. ସାଧାରଣତଃ ବ୍ୟକ୍ତିବିଶେଷ ଯୌନ ଲାଳସା ପରିତୃପ୍ତିରେ ମଜ୍ଜିଯାଏ । କିନ୍ତୁ ପରିତାପର ବିଷୟ, ଠିକ୍ ତା'ପରେ ଶରୀରରେ ରୋଗ ଆରମ୍ଭ ହୋଇଯାଏ । ଏହାଦ୍ୱାରା ମରଣ ହିଁ ଚରମ ପରିଣତି ହେଲେ ମଧ ମନୁଷ୍ୟ ଏହି ପ୍ରକାର ମନ୍ଦ ବା ପାପ ଆଚରଣକୁ ତ୍ୟାଗ କରିପାରେ ନାହିଁ ।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

'ଭଜ ଗୋବିନ୍ଦମ୍' କବିତାର ଶ୍ଲୋକଗୁଡିକ ଜୀବନର ପବିତ୍ର ଦାର୍ଶନିକ ଗୂଢ଼ତତ୍ତ୍ୱ ସବୁକୁ ବେଶ୍ ସୁନ୍ଦର ଭାବେ କ୍ରମାନ୍ୱୟରେ ପ୍ରକାଶ କରିଅଛି । ଏହି କବିତାର ପ୍ରଥମ ୧୨ଟି ଶ୍ଲୋକ ନିଜେ ଶଙ୍କର ଲେଖି ଅଛନ୍ତି । ତାପର ୧୪ଟି ଶ୍ଲୋକ କାଶୀରେ ଶଙ୍କରଙ୍କ ପଦାଙ୍କ ଅନୁସରଣକାରୀ ୧୪ଜଣ ଶିଷ୍ୟ ଲେଖିଛନ୍ତି । ବର୍ତ୍ତମାନ ଶେଷ ଚାରୋଟି ଶ୍ଲୋକ ସମସ୍ତ କବିତାର ସୁନ୍ଦର ପରିସମାପ୍ତି ଘଟାଇଅଛି । ଏହି ଶେଷ ଚାରୋଟି ଶ୍ଲୋକ ଶିଷ୍ୟମାନଙ୍କ ପ୍ରତି ଆଶୀର୍ବାଦ ସ୍ୱରୂପ ଆଚାର୍ଯ୍ୟ ଶଙ୍କରଙ୍କ ଦ୍ୱାରା ରଚିତ ।

ଏହି ଶ୍ଲୋକରେ ଶଙ୍କର ସିଧାସଳଖ ଭାବେ ସାଧକକୁ କହୁଛନ୍ତି । ସେହି ଆହ୍ୱାନରେ ସାଧକ ଉତ୍ସାହିତ ହୋଇ ଉଠିଛି ଓ ଆଚାର୍ଯ୍ୟ ତାହାକୁ ଆଶୀର୍ବାଦ କରିଛନ୍ତି । ଏହି ଶ୍ଲୋକରେ ଆଚାର୍ଯ୍ୟ ତାଙ୍କର ଅଦ୍ୱୈତ ମତବାଦକୁ ଅତ୍ୟନ୍ତ ଦୃଢ଼ ସ୍ୱରରେ ପ୍ରକାଶ କରିଅଛନ୍ତି ।

ଶ୍ଳୋକର ଏହି ମତକୁ ଆଜି ପର୍ଯ୍ୟନ୍ତ କେହି ଖଣ୍ଡନ କରିନାହାନ୍ତି। ତେଣୁ ଆମ ନିଜର ଆଧ୍ୟାତ୍ମିକ ଉନ୍ନତି ନିମିତ୍ତ ଯଦି ଏହି ମତବାଦକୁ ଗ୍ରହଣ କରିନେଉ, ତାହାହେଲେ କିଛି ଭୁଲ୍ ହେବନାହିଁ। ପ୍ରକୃତରେ ଯେପରି ଭାବେ ଶବ୍ଦଯୋଜନା କରାଯାଇଛି, ଯେପରି ଭାବରେ ଭାବର ବିକାଶ ନିମିତ୍ତ ବ୍ୟଗ୍ରତା ପ୍ରକାଶ ପାଇଛି, ଯେ କୌଣସି ଲୋକ ତାହା ପାଠ କଲେ ସେ ନିଶ୍ଚିତ ଭାବେ କହିବ ଯେ ଏହି ଶ୍ଳୋକ ନିଜେ ଶଙ୍କର ରଚନା କରିଅଛନ୍ତି।

ପଶୁ ଭାବରେ ଜୀବନ ନିର୍ବାହ କରିବାରେ କୌଣସି କଷ୍ଟ ସ୍ୱୀକାର କରିବାକୁ ପଡେନାହିଁ। କାରଣ ଏହା ଏକ ନିମ୍ନମୁଖୀ ଗତି, ପର୍ବତରୁ ନିମ୍ନ ଦେଶକୁ ଓହ୍ଲାଇବା ପର୍ବତ ଆରୋହଣ ଠାରୁ ଖୁବ୍ ସହଜ। ଉଚ୍ଚସ୍ତରକୁ ଉଠିବା ନିମିତ୍ତ ବହୁ ଶ୍ରମଲୋଡା। ଲୋକକୁ ଝାଳନାଳ ହେବାକୁ ପଡେ। ଛୁଆଟିକୁ ଜନ୍ମ ଦେବା ନିମିତ୍ତ ମା'କୁ ଜନ୍ମଜନିତ ବହୁ ଯନ୍ତ୍ରଣା ଭୋଗ କରିବାକୁ ପଡେ।

ତେଣୁ ରକ୍ତମାଂସ ଶରୀରରୂପୀ ନୀଚସ୍ତରରେ ରହି ତାହାର କ୍ଷୁଧା ମେଣ୍ଟାଇବା ନିମିତ୍ତ ଘୃଣ୍ୟ ଜୀବନଧାରଣ କରିବା ଭାରି ସହଜ। ରକ୍ତ ମାଂସ କ୍ଷୁଧା ଅହରହ ଲାଗିରହିଛି। ସେହି କ୍ଷୁଧାକୁ ସନ୍ତୁଷ୍ଟ କରିବାରେ କୌଣସି ସାଧ ସାଧନା ଦରକାର ହୁଏନା। ସମସ୍ତେ ଏପରି କାମରେ ଧୁରନ୍ଧର।

ଯେଉଁଲୋକ ଏହି ପ୍ରକାର କର୍ମରେ ସର୍ବଦା ରତ, ସେ ପରେ ରୋଗ ତଥା ପଶ୍ଚାତ୍ତାପ ଇତ୍ୟାଦି ନାନା ଯନ୍ତ୍ରଣାରେ ପେଷିହୁଏ। ଶରୀରରେ ନାନା ରୋଗ ହେଲେ ସେ ଅକର୍ମଣ୍ୟ ହୋଇଯାଏ, ତାହାର ବୃଦ୍ଧି କମିଯାଏ। ଶେଷରେ ବିନା ଡାକରାରେ ନିଜେ ନିଜର କବରରେ ପଶେ।

ଏହିପରି ଭାବେ ମରଣ ଯେତେବେଳେ ସୁନିଶ୍ଚିତ, ତଥାପି ମନୁଷ୍ୟ ନିଜର ମନ୍ଦକର୍ମରୁ ତିଳେହେଲେ ବିଚ୍ୟୁତ ହେଉନାହିଁ। ଯେଉଁ କର୍ମଦ୍ୱାରା ମନୁଷ୍ୟ ମନରେ ହତାଶ ଭାବ ଜାତ ହୁଏ, ତାହାକୁ ପାପ କୁହାଯାଏ।

ଏହି ଶ୍ଳୋକରେ କେବଳ ମନୁଷ୍ୟର ବ୍ୟବହାର ବିଷୟରେ ନିଖୁଣ ଚିତ୍ର ଦିଆଯାଇ ନାହିଁ, ତାହାର ଜୀବନରେ ବହୁ ଦୁଃଖ ଯାତନାର ନଗ୍ନ ରୂପ ମଧ୍ୟ ପ୍ରକାଶ କରାଯାଇଛି। ଏସବୁ ବୁଝି ମଧ୍ୟ ସେହି ମନ୍ଦ ଅଭ୍ୟାସରୁ ବିରତ ହେବାରେ ସେ କଷ୍ଟ ଅନୁଭବ କରେ।

ପୂର୍ବ ବାସନାର ଏହି ଟଣାଟଣିର ଅନ୍ୟ ନାମ ମାୟା। ସେହି ବାସନା ଯୋଗୁଁ ଆମେ ମନ୍ଦ କାମରେ ରତ ହେଉ, ଭଲ ଓ ମହତକାମ ମାଧ୍ୟମରେ ଅଗ୍ରସର ହେବା ନିମିତ୍ତ ଭୁଲିଯାଉ।

**ଅର୍ଥମନର୍ଥଂ ଭାବୟ ନିତ୍ୟଂ**

**ନାସ୍ତି ତତଃ ସୁଖଲେଶଃ ସତ୍ୟମ୍।**

**ପୁତ୍ରାଦପି ଧନଭାଜାଂ ଭୀତିଃ**

**ସର୍ବତ୍ରୈଷା ବିହିତା ରୀତିଃ ॥୨୯॥**

**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

ଅର୍ଥ = ସମ୍ପତ୍ତି, ଅନର୍ଥଂ = ବିପଦପୂର୍ଣ୍ଣ, ଭାବୟ = ଚିନ୍ତାକର, ନିତ୍ୟଂ = ଅହରହ, ନ-ଅସ୍ତି = ନାହିଁ, ତତଃ = ସେଥିରେ, ସୁଖଲେଶଃ = ଟିକିଏ ହେଲେ ସୁଖ, ସତ୍ୟଂ = ସତରେ, ପୁତ୍ରାତ୍-ଅପି = ଏପରିକି ନିଜ ପୁଅଠାରୁ ମଧ୍ୟ, ଧନଭାଜାଂ = ଧନୀମାନଙ୍କର, ଭୀତିଃ = ଭୟ, ସର୍ବତ୍ର = ସବୁଠାରେ, ଏଷା = ଏହି, ବିହିତା = ପ୍ରଯୁଜ୍ୟ, ରୀତିଃ = ନିୟମ (ଚଳଣି), ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ।

*୨୯. "ଅର୍ଥ ହିଁ ଅନର୍ଥର ମୂଳ କାରଣ।" ସବୁବେଳେ ମନେ ମନେ ଏହି ଭାବନା ରହିଥାଉ, ପ୍ରକୃତରେ ଏହି ଧନଠାରୁ କୌଣସି ସୁଖ ଶାନ୍ତି ମିଳେନାହିଁ। କାରଣ ଧନବାନ ଲୋକ ଏହି ଧନ ନିମିତ୍ତ ନିଜ ପୁଅକୁ ମଧ୍ୟ ଭୟ କରିଥାଏ, ସବୁଠାରେ ଧନର ଏହି ପରିଣତି।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ପୂର୍ବ ଶ୍ଳୋକରେ ରକ୍ତମାଂସର କ୍ଷୁଧା ଯେପରି ଭାବେ ବର୍ଣ୍ଣନା କରାଯାଇଛି, ସେହି କ୍ଷୁଧାର ଶକ୍ତି ଯଦି ସବୁଠାରୁ ବଳି ପରାକ୍ରମଶାଳୀ ହୁଏ, ତାହାହେଲେ ସମସ୍ତ ଦର୍ଶନ, ଶାସ୍ତ୍ର ମୂଲ୍ୟହୀନ କଳ୍ପନା ଜଳ୍ପନାରେ ପରିଣତ ହେବ। ଜଣେ ବୈଜ୍ଞାନିକ ପ୍ରତ୍ୟେକ ବିଷୟବସ୍ତୁର ଗୁଣ ପ୍ରତି ଗୁରୁତ୍ୱ ଦିଏ। ତଦନୁଯାୟୀ ନିଜର ପରିକଳ୍ପନାକୁ ଶୃଙ୍ଖଳିତ କରି ଉତ୍ତୋରତ୍ତର ଉନ୍ନତି ନିମିତ୍ତ ଅଗ୍ରସର ହୁଏ। ସେହିପରି ଏହି ଶ୍ଳୋକରେ କେତେଗୁଡ଼ିଏ ଘଟଣାର ଅବତାରଣା ଏପରି ଭାବରେ କରାଯାଇଛି ଯେ ପ୍ରତ୍ୟେକ ମନୁଷ୍ୟ ତାହାକୁ ନିଜନିଜ ଦୈନନ୍ଦିନ ଜୀବନରେ ଅନୁଭବ କରନ୍ତି।

କୌଣସି ଚିନ୍ତାଶୀଳ ବ୍ୟକ୍ତି ନିଜେ ଯେଉଁ ଅବସ୍ଥାରେ ଥାଏ, ସେହି ଅବସ୍ଥାରେ ରହିବା ପାଇଁ ଆଦୌ ଇଚ୍ଛା କରେନା । ସେ ଅଗ୍ରଗତି କରି ନିଜର ସମସ୍ତ ଅଭାବ ଅସୁବିଧା ଦୂର କରି ସୁଖ ସଂସାର ଗଢ଼ିବାକୁ ଚାହୁଁଥାଏ। ସଂସାରରେ ଧନଦୌଲତର ଆକର୍ଷଣ ଏତେ ବେଶୀ ଯେ ଆମେ ତାହାକୁ ତା' ନିଜର ସ୍ଥାନରେ ନ ବସାଇ ଖୁବ୍ ଉଚ୍ଚ ଆସନ ଦେଇଥାଉ । କାରଣ ଧନ ଦୌଲତ ଦ୍ୱାରା କେତେ କ'ଣ କରାଯାଇ ପାରିବ ବୋଲି ଆମେ ଭାବିଥାଉ। କିନ୍ତୁ ଆଶ୍ଚର୍ଯ୍ୟର ବ୍ୟାପାର, ଯେଉଁ ଧନ ଦୌଲତକୁ ମଣିଷ

ଏତେବଡ ଆସନ ଦେଇଥାଏ, ସେ ଧନ ଦୌଲତ ମଣିଷ ଦ୍ୱାରା ସୃଷ୍ଟି ହୋଇଥାଏ। ମଣିଷ ତାହା ସୃଷ୍ଟି କରି ମଧ୍ୟ ତାହାର ଦାସ ହୋଇ ରହିଥାଏ। ଆଜିକାଲି ସମସ୍ତ ନିର୍ବୋଧ ମାନବ ଧନ ଦୌଲତ ଦ୍ୱାରା ଶାସିତ।

ଏହି ଶ୍ଳୋକରେ ସେହି ଭ୍ରମକୁ ଚେତାଇ ଦେବା ପାଇଁ, ଗୁରୁ ସବୁବେଳେ ଶିଷ୍ୟକୁ ଉପଦେଶ ଦେଉଛନ୍ତି ଯେ ଅର୍ଥ ହିଁ ଅନର୍ଥର ମୂଳ କାରଣ। ବାରମ୍ବାର ଏହି କଥାକୁ ଅର୍ଥାତ୍ " ଅର୍ଥ ହିଁ ଅନର୍ଥର ମୂଳକାରଣ" ସ୍ମରଣ କଲେ ଧନ ସମ୍ପତ୍ତିର ଆସକ୍ତି ଧୀରେ ଧୀରେ ମନରୁ ଦୂର ହୋଇଯିବ। ଧନର ମୂଲ୍ୟ ଅଛି। କିନ୍ତୁ ଏହି ମୂଲ୍ୟର ଏକ ସୀମା ଅଛି। ଏହି ଧନ ସମ୍ପତ୍ତି ଦ୍ୱାରା ଆମେ ଯେତିକି ଜିନିଷ ପାଇପାରିବା, ମୂଲ୍ୟ ତାହାର ସେତିକି। କିନ୍ତୁ ବିଚାର ବୁଦ୍ଧି ହରାଇ ତାହା ପ୍ରତି ଅତିରିକ୍ତ କାଳ୍ପନିକ ମୂଲ୍ୟ ଆରୋପ କରିବା ଦ୍ୱାରା ତାହା ପ୍ରତି ଭ୍ରାନ୍ତ ମମତା ଜାତ ହେଉଛି, ସେହି ଧନ ପାଇଁ ଅନ୍ୟ ପ୍ରତି ବିଦ୍ୱେଷ, ଘୃଣା ଇତ୍ୟାଦି ବଢ଼ି ବଢ଼ି ଚାଲିଛି। ଧନ-ପାଗଳ ଲୋକେ କେତେ ପ୍ରକାରର ଭାବଧାରାରେ ଗତି କରୁଛନ୍ତି ତାହାର ଠିକଣା ନାହିଁ।

ଆଶ୍ଚର୍ଯ୍ୟର ବ୍ୟାପାର, ଧନ ଆମ ସମସ୍ତଙ୍କୁ ସମସ୍ତଙ୍କ ଠାରୁ ଦୂରେଇ ଦିଏ। ଆଶ୍ଚର୍ଯ୍ୟ ଏହି ଧନ-ଦର୍ଶନ ! ଯଦି ଧନ ନ ଥାଏ, ଏହାକୁ ପାଇବା ପାଇଁ ଆମେ ଅଣନିଃଶ୍ୱାସୀ ହୋଇପଡୁ। ଯେତେବେଳେ କିଛି ମିଳିଯାଏ, ସେତେବେଳେ ଯେଉଁମାନଙ୍କର ଆମଠାରୁ ବେଶୀ ଥାଏ ସେମାନଙ୍କୁ ଆମେ ଈର୍ଷା କରୁ ଓ ଯେଉଁମାନଙ୍କର ଆମଠାରୁ କମ୍‌ଥାଏ, ସେମାନଙ୍କ ନିକଟରେ ଆମେ ନିଜକୁ ବଡ ବୋଲି ଗର୍ବ ଅନୁଭବ କରୁ।

ଧନର ଏହି ଯେଉଁ ଖେଳ ଚାଲେ, ସଂସାରରେ ଯେତେବେଳେ ଆମେ ଟିକିଏ କୃତକାର୍ଯ୍ୟ ହୋଇଉଠୁ, ସେତେବେଳେ ଏହି ଈର୍ଷା ଓ ଆତ୍ମଗର୍ବର ସୀମା କୌଣସି ବନ୍ଧନ ମାନେନା। ଓଃ, କି ଅଦ୍ଭୁତ ଶକ୍ତି !

ଧନ କେବଳ ଈର୍ଷା ଓ ବୃଥା ଅହମିକା ଆଣେନା, ତହା ସହିତ ସନ୍ଦେହ ଓ ଭୟ ମଧ୍ୟ ଆଣିଦିଏ। ଯେଉଁମାନଙ୍କର ଧନ ନ ଥାଏ, ସେମାନଙ୍କ ପ୍ରତି ସନ୍ଦେହ, କାରଣ ସେମାନେ ଆମକୁ କାଳେ ବିନାଶ କରିଦେବେ ଓ ଭୟ, କାଳେ ଆମର ଲୁକ୍କାୟିତ ସମ୍ପତ୍ତିଟିକୁ ଲୁଟିନେବେ।

ଅର୍ଥ ସୁଖଶାନ୍ତିଦାୟକ ନୁହେଁ। ଅର୍ଥ ଅନର୍ଥର ବୀଜ। ତେଣୁ ଆଚାର୍ଯ୍ୟ ଶଙ୍କର କହିଛନ୍ତି ଯେ ଏପରିକି ତୁମର ପୁଅ ଗଚ୍ଛିତ ସମ୍ପତ୍ତି ନିମିତ୍ତ ଭୟର କାରଣ ହୋଇଥାଏ। ତେଣୁ ସବୁବେଳେ ମନେ ରଖିଥାଅ ଅର୍ଥ କେବଳ କୌଣସି କର୍ମର ଉପାୟ ମାତ୍ର;

ଫଳାଫଳ ନୁହେଁ। ଅର୍ଥ ବିପଦର ଖଣି। ଏହି ଅର୍ଥ ବିନିଯୋଗ କରିବା ପାଇଁ ଖୁବ୍ ଯତ୍ନଶୀଳ ହୁଅ। ଧନକୁ ନିଜର ସେବାରେ ବିନିଯୋଗ ପାଇଁ ମୁକ୍ତହସ୍ତ ହୁଅ। ଧନ ତୁମକୁ ଯେପରି ତାହାର ସେବାରେ ଲଗାଇବା ପାଇଁ ସୁଯୋଗ ନ ପାଏ। ତୁମେ ଯେତେବେଳେ ଧନର ମାଲିକ ହୁଅ, ତାହା ସୁଖକର। କିନ୍ତୁ ଧନ ଯେତେବେଳେ ତୁମର ମାଲିକ ହୁଏ, ସେତେବେଳେ ତୁମେ ଅଭିଶପ୍ତ, ତିଳେମାତ୍ର ସୁଖ ଦିଏ ନା। ଏହା ହିଁ ସତ୍ୟ। ଏହା ହିଁ ଧନର ଗୁଣ।

**ପ୍ରାଣାୟାମଂ ପ୍ରତ୍ୟାହାରଂ**
**ନିତ୍ୟାନିତ୍ୟବିବେକବିଚାରମ୍।**
**ଜାପ୍ୟସମେତ-ସମାଧିବିଧାନଂ**
**କୁର୍ବବଧାନଂ ମହଦବଧାନମ୍ ।।୩୦।।**
**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

ପ୍ରାଣାୟାମଂ = ସମସ୍ତ କ୍ରିୟାକଳାପର ସଂଯମ (ତୁମ ଭିତରେ ଜୀବନୀ ଶକ୍ତିର ପରିପ୍ରକାଶ) ପ୍ରତ୍ୟାହାରଂ = ବିଷୟବସ୍ତୁରୁ ଇନ୍ଦ୍ରିୟ ସକଳକୁ ଫେରାଇ ଆଣିବା, ନିତ୍ୟ-ଅନିତ୍ୟ-ବିବେକ-ବିଚାରମ୍ = ନିତ୍ୟ ଅନିତ୍ୟ ବସ୍ତୁ ସମ୍ବନ୍ଧରେ ବିଚାର, ଜାପ୍ୟ-ସମେତ = ଜପ ସହିତ, ସମାଧି-ବିଧାନ = ଅନ୍ତରରେ ସ୍ଥିରତା ନିମିତ୍ତ ଚେଷ୍ଟା, କୁରୁ = କର, ଅବଧାନଂ = ଯତ୍ନର ସହିତ, ମହତ୍-ଅବଧାନମ୍ = ଖୁବ୍ ଯତ୍ନର ସହିତ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ।

*୩୦. ସମସ୍ତ କର୍ମରେ ସଂଯମ, ବିଷୟବସ୍ତୁର ଆସକ୍ତିରୁ ନିବୃତ୍ତି, ନିତ୍ୟ ଓ ଅନିତ୍ୟବସ୍ତୁ ବିଚାରରେ ଅନୁସନ୍ଧାନ ଓ ଜପ ସହିତ ସମାଧି ଲାଭ ନିମିତ୍ତ ଅହରହ ଚେଷ୍ଟାରେ ଲାଗିପଡ।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

ଯେଉଁ ସାଧକ ଧନ ରୋଜଗାରର ଆସକ୍ତିରୁ ନିଜ ମନକୁ ନିବୃତ୍ତ କରାଇପାରି ଭଲ-ମନ୍ଦ ସୁଖ-ଦୁଃଖ ଇତ୍ୟାଦି ଦ୍ୱନ୍ଦ୍ୱରୁ ନିଜକୁ ସଂଯତ କରାଇ ପାରିଛି, ସେହି ପ୍ରକାର ଲୋକକୁ ଶଙ୍କର ଉପଦେଶ ଦେଇଛନ୍ତି।

ଅହମିକାଜନିତ କର୍ତ୍ତାପଣିଆ ଭାବକୁ ଅନ୍ତର ଭିତରେ ଯତ୍ନର ସହିତ ସଂଯମ କରିବା ସାଧକର ନିତାନ୍ତ ଆବଶ୍ୟକ। ସେହି ପ୍ରକାର ସାଧକ ନିମିତ୍ତ ଗୁରୁ ପାଞ୍ଚ ପାହାଚ ନିର୍ମିତ ଏକ ପଥରେ ଚାଲିବା ପାଇଁ ଉପଦେଶ ଦେଇଛନ୍ତି। ସେହି ରାସ୍ତାରେ ଚାଲିଲେ

ସାଧକ ନିଜ ଲକ୍ଷ୍ୟ ସ୍ଥଳରେ ପହଞ୍ଚିପାରିବ। ଗୀତାପାଠ, ମୁରାରୀ ପୂଜା, ସତ୍‌ସଙ୍ଗ, ଦାନ ଓ ସମସ୍ତ ପ୍ରକାର ଧନ ଦୌଲତ ଆହରଣକୁ ଉପଯୁକ୍ତ ବିଚାର ଦ୍ୱାରା ନିବୃତ୍ତ କରିବା ଇତ୍ୟାଦିର ଯେଉଁ ପାଞ୍ଚପାହାଚ ବିଶିଷ୍ଟ ସାଧନା କରାଯାଏ, ତାହାକୁ ବେଦାନ୍ତ ମତରେ 'ବହିଃରଙ୍ଗ ସାଧନା' କୁହାଯାଏ।

କିନ୍ତୁ ଏହି ଶ୍ଳୋକରେ ଆମକୁ 'ଅନ୍ତରଙ୍ଗ ସାଧନା' ବିଷୟରେ କୁହାଯାଇଛି। ଶଙ୍କର ତାହାକୁ ପାଞ୍ଚ ପାହାଚରେ ବିଭକ୍ତ କରିଛନ୍ତି- (୧) ପ୍ରାଣାୟାମ୍, (୨) ପ୍ରତ୍ୟାହାର, (୩) ନିତ୍ୟ-ଅନିତ୍ୟ ବିବେକ ବିଚାର, (୪) ଜପ ଏବଂ (୫) ଏସବୁର ଚରମ ପରିଣତି ସମାଧି।

ପ୍ରାଣାୟାମକୁ ଆମେ ସାଧାରଣତଃ ବୁଝିଥାଉ ପ୍ରାଣ ବା ବାୟୁ ସଂଯମ। କିନ୍ତୁ ସଂସ୍କୃତରେ ତାହାକୁ ଶ୍ୱାସାୟମ୍ କୁହାଯାଇଥାଏ। ସଂସ୍କୃତରେ ପ୍ରାଣ ଅର୍ଥ ଜୀବନ ଏବଂ ଉପନିଷଦ୍‌କାରମାନେ ଏହି ପ୍ରାଣକୁ ପାଞ୍ଚ ଭାଗରେ ବିଭକ୍ତ କରିଛନ୍ତି।

ଏହି ପାଞ୍ଚ ବିଭାଗର ପାଞ୍ଚଟି ନାମ ଅଛି।

(୧) ପ୍ରାଣ- ଯାହାଦ୍ୱାରା ବାହାର ଜଗତରୁ ବିଷୟ ସବୁ ଗ୍ରହଣ କରୁ।

(୨) ଅପାନ- ଯାହାଦ୍ୱାରା ଅନ୍ତର ଭିତରୁ ସବୁ ବାହାର କରିଦେଉ।

(୩) ବ୍ୟାନ- ଯାହାଦ୍ୱାରା ହଜମ କରୁ ବା ନିଜର କରିନେଉ।

(୪) ସମାନ- ଯାହାଦ୍ୱାରା ପ୍ରତ୍ୟେକ ଶିରା ପ୍ରଶିରାରେ ସମଭାବରେ ରକ୍ତ ପରିଚାଳନା କରୁ।

(୫) ଉଦାନ- ଉପସ୍ଥିତ ଅବସ୍ଥାରୁ ଉତ୍ତମ ଓ ମହତ୍ ଅବସ୍ଥାରେ ପହଞ୍ଚିବା ନିମିତ୍ତ ଯେଉଁ ଶକ୍ତି ଆବଶ୍ୟକ କରୁ।

ଜୀବନର ଏହି ପଞ୍ଚପ୍ରକ୍ରିୟାର ସଂଯମକୁ ପ୍ରାଣାୟାମ କୁହାଯାଏ।

ମଣିଷର ମତିଗତି ଓ ଭାବଧାରାକୁ ସ୍ଥିର ଓ ନିସ୍ତେଜ କରିଦେବା ପାଇଁ ପ୍ରାଣ ସଂଯମ ଅଭ୍ୟାସକୁ ଧାରାବାହିକ ଭାବେ ଅଭ୍ୟାସ କରିବା ଆବଶ୍ୟକ।

ବହୁ ସମୟ ଧରି ଅତ୍ୟନ୍ତ ନିଷ୍ଠା ସହକାରେ ଭଗବାନଙ୍କ ଠାରେ ଭକ୍ତି ଓ ଲୟ ରଖିଲେ, ଶାସ୍ତ୍ରପାଠ କଲେ ଏବଂ ନିଃସ୍ୱାର୍ଥପର ଭାବରେ ଜନତାର ସେବାକଲେ ଏହି ପ୍ରାଣାୟାମ ସାଧିତ ହୋଇପାରିବ।

ଏହି ପ୍ରକାର ପ୍ରାଣାୟମ ସାଧନ କରି ସାଧକ ଯେତେବେଳେ ଶକ୍ତି ସଞ୍ଚୟ କରେ, ସେତେବେଳକୁ ତାହାର ବହିର୍ମୁଖୀ ମନ ଧୀରେ ଧୀରେ ଅନ୍ତର୍ମୁଖୀ ହୋଇ ଆସୁଥାଏ। ଏହି ପ୍ରକାର ଅନ୍ତର୍ମୁଖୀ ଗତିକୁ ପ୍ରତ୍ୟାହାର କୁହାଯାଏ।

କିନ୍ତୁ ଜୀବନର ମହତ୍ୱ ଉପଲବ୍ଧି କରିବା ପାଇଁ ବୁଦ୍ଧିକୁ ନୂତନ ଶିକ୍ଷା ପଦ୍ଧତିରେ ଅନୁପ୍ରାଣିତ ନ କଲେ ପ୍ରାଣାୟାମ ଓ ପ୍ରତ୍ୟାହାର ଆଦୌ ସମ୍ଭବପର ହୁଏନା। ତେଣୁ ବୁଦ୍ଧିର ବିଚାର ଶକ୍ତିକୁ ବଢ଼ାଇ ଅନିତ୍ୟ ବସ୍ତୁରୁ ନିତ୍ୟ ବସ୍ତୁକୁ ବାଛିବା ହିଁ ପ୍ରଧାନ କାମ। ଅହରହ ଶାସ୍ତ୍ରପାଠ, ଧାରାବାହିକ ଚିନ୍ତନ ମନନ ଇତ୍ୟାଦି ଯାହାସବୁ ଉପନିଷଦ୍ ମାନଙ୍କରେ କୁହାଯାଇଛି, ତାହା କଲେ ବୁଦ୍ଧିର ବିଚାରଶକ୍ତି ବଢ଼ିବ। ବୁଦ୍ଧିର ଏହି ସୂକ୍ଷ୍ମ ବିଚାରକୁ ବଢ଼ାଇବା ନିମିତ୍ତ ଆହୁରି ଏକ ଅଭ୍ୟାସ ଦରକାର। ସେହି ଅଭ୍ୟାସ ଜପଦ୍ୱାରା ସମ୍ଭବ ହେବ।

ଯେତେବେଳେ ଜପ ମାଧମରେ ବୁଦ୍ଧି ସ୍ଥିର ତଥା ଏକାଗ୍ର ହୋଇ ଆସେ, ସେତେବେଳେ ଉପନିଷଦର ସୂକ୍ଷ୍ମ ତତ୍ତ୍ୱଗୁଡ଼ିକ ବୁଝିବାକୁ ସେ ଶକ୍ତି ଅର୍ଜନ କରିଥାଏ, ତେଣୁ ତାହାର ବିବେକ ବିଚାର ଉନ୍ନତ ହୋଇଥାଏ। ସେ ବିବେକ ବିଚାର ସାହାଯ୍ୟରେ ଅନିତ୍ୟରୁ ନିତ୍ୟକୁ ବାଛି ଅନିତ୍ୟରୁ ମନକୁ ଫେରାଇ ଆଣେ। ଏହି ପ୍ରକାର ମନକୁ ଫେରାଇ ଆଣିବାର ଶକ୍ତିକୁ ପ୍ରତ୍ୟାହାର କୁହାଯାଏ।

ଯେତେବେଳେ ସାଧକ ବିଚାର ବୁଦ୍ଧି ବଳରେ ମନକୁ ସଂଯତ କରିଥାଏ ବା ମନକୁ ଅନିତ୍ୟରୁ ସହଜରେ ଫେରାଇ ଆଣିଥାଏ, ସେତେବେଳେ ତାହାର ମନର ସୂକ୍ଷ୍ମ ପ୍ରବୃତ୍ତି ଶୁଦ୍ଧପୂତ ହୋଇଯାଇଥାଏ। ସେହି ସମୟରେ ସାଧକର ଇନ୍ଦ୍ରିୟ, ମନ ଓ ବୁଦ୍ଧି ଆଉ ଚଞ୍ଚଳ ହୁଅନ୍ତି ନାହିଁ। ବହିର୍ମୁଖୀ କର୍ମପ୍ରବାହ ନୀରବ ହୋଇଯାଆନ୍ତି। କୌଣସି ଚିନ୍ତା ରହେ ନାହିଁ। ସେତେବେଳେ ଏକ ଅଦ୍ଭୁତ ଅବସ୍ଥା ଆସି ପହଞ୍ଚେ, ତାହାକୁ ସମାଧି କୁହାଯାଏ।

ସମାଧି ରୂପର ଚରମ ପରିଣତି ବିଷୟରେ ଏପରି ସୁନ୍ଦରଭାବେ କୌଣସି ଶାସ୍ତ୍ରରେ ବର୍ଣ୍ଣନା କରାଯାଇ ନାହିଁ। ଏହି ଚରମ ଅନୁଭୂତିକୁ କେହି ବାହାରୁ ଲାଭ କରିନାହିଁ। ଏହା ସବୁବେଳେ ଆମ ପାଖରେ ଅଛି। ସମାଧି ଅଭ୍ୟାସ କଲେ ଚିରନ୍ତନ ସତ୍ୟ ଉପରୁ ଅଜ୍ଞାନ ପରଦା ଉଠିଯିବ। ସେତେବେଳେ ତୁମେ ଅନୁଭବ କରିବ "ତତ୍ତ୍ୱମସି"। ସେହି ସତ୍ୟକୁ ଛାନ୍ଦୋଗ୍ୟ ଉପନିଷଦ୍ ସୁନ୍ଦର ଭାବେ ବିଶ୍ଳେଷଣ କରିଛି।

ଶରୀର, ମନ ଓ ବୁଦ୍ଧିର ସଂଯମ ଓ ଶୃଙ୍ଖଳା ଅତି ଧୀରସ୍ଥିର ଭାବେ ଚତୁରତାର ସହିତ ଶାନ୍ତ ବାତାବରଣରେ ପାଳନ କରିବାକୁ ପଡିବ। ମନ ଉପରେ କୌଣସି ଜୋର

ଜବରଦସ୍ତି କିମ୍ବା ଅନ୍ତରର ଭାବଧାରା ଉପରେ କୌଣସି ବଳ ପ୍ରୟୋଗ କରିବାକୁ ପଡିବ ନାହିଁ। ବଳ ପ୍ରୟୋଗ ଦ୍ୱାରା ଭାବଧାରା ଅଳ୍ପକ୍ଷଣ ପାଇଁ ଚାପି ହୋଇ ରହେ ଓ ନାନା ବିଶୃଙ୍ଖଳାର ସୃଷ୍ଟି ହୁଏ। ନିଜ ବ୍ୟକ୍ତିତ୍ୱର ସ୍ୱାଭାବିକ ବିକାଶରେ ତରତର ହେବାର କୌଣସି ଆବଶ୍ୟକତା ନାହିଁ।

ପ୍ରକୃତିର ସୃଷ୍ଟିରେ ଚଞ୍ଚଳତାର ଚିହ୍ନବର୍ଣ୍ଣ ନାହିଁ। ଅରୁଣର ଉଦୟ, ଚନ୍ଦ୍ରମାର ବିଳୟ, କଳିକାର ବିକାଶ, କୁସୁମର ବିନାଶ, ମାତୃ ଗର୍ଭରେ ଭ୍ରୂଣ, ବୀଜ ଭିତରେ ତୃଣ ସମସ୍ତେ ଶୃଙ୍ଖଳାର ସହିତ ଧୀରେ ଧୀରେ ଆଗଉଛନ୍ତି। ସେ କ୍ଷେତ୍ରରେ ସାଧକ ଯଦି ତାହାର ସାଧନାର ଗତିକୁ ଦ୍ୱିଗୁଣିତ କରି ଦୌଡିବାକୁ ଚେଷ୍ଟାକରେ, ଲାଭ ପରିବର୍ତ୍ତେ କ୍ଷତି ଅନିବାର୍ଯ୍ୟ। ତେଣୁ ଶଙ୍କର ଅତି ଧୀର ଓ ବଜ୍ରଗମ୍ଭୀର ସ୍ୱରରେ ଅନ୍ତରଭରା ପ୍ରେମରେ ସାଧକକୁ ଉପଦେଶ ଦେଉଛନ୍ତି, "ଅବଧାନମ୍ ମହତ ଅବଧାନମ୍"; ଅର୍ଥାତ୍ ସମସ୍ତ କର୍ମ କର ଧୀର ସ୍ଥିର ଭାବେ, ଅତି ଧୀର ସ୍ଥିର ଭାବେ।

**ଗୁରୁଚରଣାମ୍ବୁଜନିର୍ଭରଭକ୍ତଃ**
**ସଂସାରାଦଚିରାଦ୍ଭବ ମୁକ୍ତଃ।**
**ସେନ୍ଦ୍ରିୟମାନସନିୟମାଦେବଂ**
**ଦ୍ରକ୍ଷ୍ୟସି ନିଜହୃଦୟସ୍ଥଂ ଦେବମ୍ ॥୩୧॥**
**(ଭଜଗୋବିନ୍ଦଂ ଭଜଗୋବିନ୍ଦଂ...)**

ଗୁରୁ-ଚରଣ-ଅମ୍ବୁଜ-ନିର୍ଭରଃ-ଭକ୍ତଃ = ଗୁରୁଙ୍କ ପାଦପଦ୍ମରେ ଆଶ୍ରିତ ଭକ୍ତ, ସାଂସାରାତ୍ = ସଂସାରରୁ, ଅଚିରାତ୍ = ଖୁବ୍‌ଶୀଘ୍ର, ଭବ ମୁକ୍ତଃ = ମୁକ୍ତିଲାଭ କରେ, ସେନ୍ଦ୍ରିୟ ମାନସ ନିୟମାତ୍ = ଇନ୍ଦ୍ରିୟ ଓ ମନକୁ ସଂଯମ କରି, ଏବଂ = ଏହି ପ୍ରକାର, ଦ୍ରକ୍ଷ୍ୟସି = ଅନୁଭବ କରେ, ନିଜ-ହୃଦୟସ୍ଥଂ = ନିଜ ଅନ୍ତର ଭିତରେ ଥିବା, ଦେବମ୍ = ଦେବଙ୍କୁ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ, ଭଜ = ଭଜ, ଗୋବିନ୍ଦଂ = ଗୋବିନ୍ଦଙ୍କୁ।

*୩୧. ହେ ଗୁରୁ ପାଦପଦ୍ମ ନିର୍ଭର ଭକ୍ତ ! ଇନ୍ଦ୍ରିୟ ଓ ମନକୁ ସଂଯମ କରି ସଂସାରରୁ ମୁକ୍ତିଲାଭ କର। ତୁମ ଅନ୍ତର ଭିତରେ ଥିବା ବ୍ରହ୍ମଙ୍କୁ ଅନୁଭବକର।*

*(ଗୋବିନ୍ଦଙ୍କୁ ଭଜ, ଗୋବିନ୍ଦଙ୍କୁ ଭଜ...)*

କଣ୍ଟକମୟ ସଂସାର ଯାତ୍ରାପଥକୁ ସହଜ ଭାବରେ ପାରହେବା ନିମିତ୍ତ ଗୁରୁଙ୍କଠାରେ ବିଶ୍ୱାସ ଓ ଭକ୍ତି ଏକାନ୍ତ ଆବଶ୍ୟକ। ବିଶ୍ୱାସ ମାନବ ହୃଦୟର ପରମ ଶକ୍ତି, ବିଶ୍ୱାସ

ବିଷୟରେ ସେଣ୍ଟ୍ ଅଗଷ୍ଟାଇନ୍ କହିଛନ୍ତି "ଯାହା ନ ଦେଖୁଛ, ତାକୁ ସତ ବୋଲି ଗ୍ରହଣ କରିନେବାକୁ କହନ୍ତି ବିଶ୍ୱାସ। ଆଉ ବିଶ୍ୱାସ ଫଳରେ ଯାହା ତୁମେ ଗ୍ରହଣ କରିନେଲ ତା'କୁ ଦେଖି ପାରିବ ବା ଅନୁଭବ କରିପାରିବ।" ଗୁରୁ ଯାହା କହନ୍ତି, ତାହା ଆମେ ସହଜରେ ଧାରଣା କରିପାରୁ ନାହିଁ। କିନ୍ତୁ ଗୁରୁଙ୍କର ଯୁକ୍ତିଯୁକ୍ତ ଆଲୋଚନା ବିଷୟବସ୍ତୁକୁ ଉପଯୁକ୍ତ ଭାବେ ବୁଝିବାରେ ଆମକୁ ସାହାଯ୍ୟ କରିଥାଏ। ଥରେ ଯଦି ଆମେ ସେହି ଆଦର୍ଶକୁ ଗ୍ରହଣ କରିନେଉ, ସେହି ଗ୍ରହଣ କରି ନେବାଟା ଆମର ବିଶ୍ୱାସରେ ପରିଣତ ହୋଇଯାଏ। ସୁତରାଂ ବିଶ୍ୱାସ ଆମ ଅନ୍ତର ଭିତରେ ଏକ ଲୁକ୍‌କାୟିତ ଶକ୍ତି, ଯାହା ଯୋଗୁଁ ଆମେ କୌଣସି ବିଷୟରେ ସ୍ୱୟଂ ଅନୁଭୂତି ନ ଆଣିଥିଲେ ମଧ, ଜିନିଷର ସତ୍ୟାସତ୍ୟକୁ ଗ୍ରହଣ କରି ନେଇଥାଉ।

ଏହି ବିଶ୍ୱାସ ମଣିଷକୁ ନିଜର ଜୀବନ ଯାତ୍ରାର ପରମ ଲକ୍ଷ୍ୟ ସ୍ଥଳକୁ ନେଇଯାଏ। ଗୁରୁଙ୍କଠାରେ ବିଶ୍ୱାସ ଥିବାବେଳେ ଶିଷ୍ୟ ମୂକ, ବଧିର ଓ ଅନ୍ଧ। ତାହାର ସମସ୍ତ କର୍ମ ଗୁରୁ ସମ୍ପାଦନ କରୁଥାନ୍ତି।

ଗୁରୁ ଏହିପରି ବିଶ୍ୱାସୀ ଓ ନିଷ୍ଠାବାନ ଶିଷ୍ୟ ବା ସାଧକମାନଙ୍କୁ ଆଶୀର୍ବାଦ କରି କହୁଛନ୍ତି "ସଂସାର ସାଗରରୁ ତୁମର ଉଦ୍ଧାର ହିଁ ଗୁରୁଙ୍କର ଏକମାତ୍ର କାମନା।"

କେହି କେହି ମନେକରି ପାରନ୍ତି ଯେ ଏହି ପ୍ରକାର ମୁକ୍ତି କେବେ କେଉଁ ଜନ୍ମରେ ହେବ ତାହାର ଠିକଣା ନାହିଁ। ଶଙ୍କର ସେଥି ନିମିତ୍ତ କହିଛନ୍ତି, "ନା, ମୁକ୍ତି ଏହି ଜନ୍ମରେ ଏହିଠାରେ ହିଁ ହେବ"। ଅଦ୍ୱୈତାଚାର୍ଯ୍ୟ ଶଙ୍କର ଶିଷ୍ୟମାନଙ୍କୁ ଆଶୀର୍ବାଦ କରି କହୁଛନ୍ତି ଯେ ମନ ଓ ଇନ୍ଦ୍ରିୟ ସଂଯମ କରି ତୁମ ଭିତରେ ସେହି ପରମକାମ୍ୟ ପରମ ଚୈତନ୍ୟକୁ ଅନୁଭବ କରିପାରିବ।

ଗୁରୁଙ୍କ ପ୍ରତି ଅଚଳା ଭକ୍ତି ଓ ପ୍ରାଣଭରା ସମ୍ମାନ ଯେ କେବଳ ଶିଷ୍ୟମାନେ ପ୍ରଦର୍ଶନ କରିବେ, ତାହା ନୁହେଁ; ଗୁରୁ ମଧ ତାହା ପାଳନ କରିବେ। ଏହି ଶ୍ଳୋକରେ ଆଚାର୍ଯ୍ୟ ଶଙ୍କର ନିଜ ଗୁରୁଙ୍କ ପ୍ରତି ଭକ୍ତି ଓ ଶ୍ରଦ୍ଧା ପ୍ରଦର୍ଶନ କରିଅଛନ୍ତି। ତାଙ୍କର ଗୁରୁ ଗୋବିନ୍ଦାଚାର୍ଯ୍ୟ। ତାଙ୍କରି ସ୍ମରଣରେ ସେ କହିଅଛନ୍ତି, ଭଜଗୋବିନ୍ଦଂ....

ଯାହାହେଉ ଉପନିଷଦ୍‌ରେ ମଧ ବହୁ ସ୍ଥାନରେ ଗୁରୁଙ୍କର ମହିମା ବର୍ଣ୍ଣନା କରାଯାଇଛି। ମୁଣ୍ଡକ ଉପନିଷଦ୍‌ରେ କୁହାଯାଇଛି–

"ସ ଗୁରୁଂ ଏବ ଅଭିଗଚ୍ଛେତ୍ ସମିତ୍‌ପାଣିଃ ଶ୍ରୋତ୍ରିୟଂ ବ୍ରହ୍ମନିଷ୍ଠମ୍।" ପୁଣି ଛାନ୍ଦୋଗ୍ୟ

ଉପନିଷଦରେ କୁହାଯାଇଛି- "ଆଚାର୍ଯ୍ୟବାନ୍ ପୁରୁଷୋବେଦ।" ଅର୍ଥାତ୍ ଯାହାଙ୍କର ଗୁରୁ ଅଛନ୍ତି ସେ କେବଳ ବ୍ରହ୍ମଜ୍ଞାନ ଅନୁଭବ କରିପାରିବେ।

ତେଣୁ ଗୁରୁଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି ଗୋବିନ୍ଦଙ୍କୁ ଭଜନ କରିବା ନିମିତ୍ତ ବେଦାନ୍ତ ନିର୍ଦ୍ଦେଶ ଦେଉଛି।

ଶଙ୍କରଙ୍କର ଅନ୍ୟାନ୍ୟ ଲେଖାମାନଙ୍କ ମଧ୍ୟରୁ 'ଭଜ ଗୋବିନ୍ଦମ୍' ଏକ କ୍ଷୁଦ୍ରଲେଖା। ସାଧାରଣତଃ ଆଧ୍ୟାତ୍ମିକ ଗୁରୁଗଣ ନିଜର ସ୍ୱ-ଅନୁଭୂତ ଜ୍ଞାନକୁ ଅତି ସହଜ ଓ ସରଳ ଭାଷାରେ ପ୍ରକାଶ କରିଥାନ୍ତି। କିନ୍ତୁ ତଥାକଥିତ ପଣ୍ଡିତଗଣ ତାହାକୁ ଅତି ସାଦାସିଧା କଥା ବୋଲି କହିଥାନ୍ତି।

ଭାଷାର ସରଳତା, ଶବ୍ଦଯୋଜନାର ପରିପାଟୀ ସମବେତ ସ୍ୱରରେ ଗାନ କରିବାର ମାଧୁରୀ ଯୋଗୁଁ 'ଭଜ ଗୋବିନ୍ଦମ୍' ସର୍ବଜନପ୍ରିୟ ହୋଇଥିବାରୁ ଆଜି ମଧ୍ୟ ଆମେ ଆକୁମାରୀ ହିମାଚଳ ଏହାର ପ୍ରସାର ଦେଖିବାକୁ ପାଉଛୁ। ଶିଶୁମାନେ ମଧୁର କଣ୍ଠରେ ଓ ଯୁବକ ଯୁବତୀଗଣ ବଜ୍ରଗମ୍ଭୀର ସ୍ୱରରେ ଏ 'ଭଜ ଗୋବିନ୍ଦମ୍' ଗାନ ରତ। ବୁଦ୍ଧିମାନ ଏହାକୁ ବେଶ୍ ବିଚାରର ସହିତ ପସନ୍ଦ କରୁଛନ୍ତି। ଦାର୍ଶନିକଗଣ ଏଥିରେ ତୃପ୍ତ। ସାଧକଗଣ ଏହାରି ସାହାଯ୍ୟରେ ନିଜ ଲକ୍ଷ୍ୟସ୍ଥଳକୁ ଧାବମାନ।

ଯେତେବେଳେ ଯୁଗ ଯୁଗ ଧରି ସକଳ ଶ୍ରେଣୀର ଲୋକେ ଏହାର ମାଧୁରୀ ପାନ କରୁଛନ୍ତି, କାଳର ଉତ୍‌ଥାନ ପତନ ମଧ୍ୟରେ ଏହି ଲେଖାର କେତେ ପରିବର୍ତ୍ତନ ଦେଖାଦେଇଛି। ମୁଁ (ସ୍ୱାମୀଜୀ) ସେ ସବୁ ପଢ଼ି ତାହାର ସାର ଗ୍ରହଣ କରିଛି।

ଏହି କବିତାଟିରେ ୩୧ଟି ଶ୍ଳୋକ ରହିଛି, ପ୍ରତି ଶ୍ଳୋକରେ ଶେଷରେ ପ୍ରଥମ ଶ୍ଳୋକଟିକୁ ସମବେତ କଣ୍ଠରେ ପୁନରାବୃତ୍ତି କରାଯାଏ, ପ୍ରଥମ ୧୨ଟି ଶ୍ଳୋକ ଅର୍ଥାତ୍ ୨ରୁ ୧୩ ପର୍ଯ୍ୟନ୍ତ ଏହା ଆଦି ଶଙ୍କରଙ୍କର ଲେଖା ବୋଲି କୁହାଯାଇଛି। ତାପରେ ୧୪ରୁ ୨୭ ପର୍ଯ୍ୟନ୍ତ ୧୪ଟି ଶ୍ଳୋକ ଗୁରୁଙ୍କର କାଶୀଯାତ୍ରା ସମୟରେ ସାଥିରେ ଥିବା ୧୪ଜଣ ଶିଷ୍ୟଙ୍କ ଦ୍ୱାରା ବର୍ଣ୍ଣିତ ବୋଲି କୁହାଯାଇଛି। ଏହାର କୌଣସି ନିର୍ଦ୍ଦିଷ୍ଟ ପ୍ରମାଣ ବି ନାହିଁ ଯେ ଅମୁକ, ଅମୁକ ଶ୍ଳୋକ ଲେଖିଛନ୍ତି। ଯାହା ଆମେ ପାଇଛୁ ତାହା ଲୋକମୁଖ ନିଃସୃତ ମାତ୍ର।

ବର୍ତ୍ତମାନ ଶେଷ ୪ଟି ଶ୍ଳୋକ ପୁଣି ଶଙ୍କରଙ୍କ ଦ୍ୱାରା ଲେଖାଯାଇଛି ବୋଲି କୁହାଯାଇଛି। ଆଚାର୍ଯ୍ୟ ଶଙ୍କର ଏହି ଚାରୋଟି ଶ୍ଳୋକରେ ସାଧକବୃନ୍ଦଙ୍କୁ ଆଶୀର୍ବାଦ କରିଅଛନ୍ତି। ସେହି ଆଶୀର୍ବାଦ ଆମ ସମସ୍ତଙ୍କର ମଙ୍ଗଳ କରୁ।



ସ୍ୱାମୀ ଚିନ୍ମୟାନନ୍ଦ

ସ୍ୱାମୀ ବିବେକାନନ୍ଦଙ୍କ ପ୍ରତିରୂପସମ ପ୍ରସିଦ୍ଧି ଲାଭ କରିଥିବା ପୂଜ୍ୟ ଗୁରୁଦେବ ସ୍ୱାମୀ ଚିନ୍ମୟାନନ୍ଦ (୧୯୧୬-୧୯୯୩) ମାନବ ସମାଜ ନିମନ୍ତେ ଏକ ଅସାଧାରଣ ଐଶ୍ୱର୍ଯ୍ୟ ଛାଡ଼ି ଯାଇଛନ୍ତି। ଜୀବନର ବାସ୍ତବ ଉଦ୍ଦେଶ୍ୟର ଅନୁଭୂତି ହେବା ପରେ, ବେଦାନ୍ତର ସନ୍ଦେଶକୁ ପ୍ରସାର କରିବା ନିମନ୍ତେ ଚାରି ଦଶନ୍ଧି ଧରି ଅକ୍ଲାନ୍ତ ପରିଶ୍ରମ ଓ ଅଦମ୍ୟ ଶକ୍ତିର ସହ କାର୍ଯ୍ୟ କରିଛନ୍ତି। ଜଣେ ବିଦଗ୍ଧ ବକ୍ତା, ଲେଖକ, ପଥପ୍ରଦର୍ଶକ, ଦେଶପ୍ରେମୀ ଓ ଆଧ୍ୟାତ୍ମିକ ମହାପୁରୁଷ ଭାବରେ ସେ ଭାରତୀୟ ଆଧ୍ୟାତ୍ମିକ ଐତିହ୍ୟର ଜଣେ ଉତ୍ତମ ପ୍ରତିନିଧି ଥିଲେ। ବିଶ୍ୱବ୍ୟାପୀ ବିସ୍ତାରିତ ଚିନ୍ମୟ ମିଶନର ସଂଗଠନ ଏହି ମହାନ୍ ସନ୍ଥଙ୍କ ଦ୍ୱାରା ପ୍ରଜ୍ୱଳିତ ମଶାଲକୁ ବହନ କରେ।

ସବୁ ଯୁଗର ସନ୍ଥମାନଙ୍କ ମଧ୍ୟରେ ଆଦି ଶଙ୍କରାଚାର୍ଯ୍ୟ ଜଣେ ପ୍ରସିଦ୍ଧ ବୈପ୍ଲବିକ ଚିନ୍ତାନାୟକ । ବୈଦିକ ସଂସ୍କୃତିର ବାସ୍ତବ ମହନୀୟତାକୁ ସେ ଉଜ୍ଜୀବିତ, ପୁନରୁଦ୍ଧାର ତଥା ଉନ୍ନୀତ କରିଥିଲେ । ସେ କେବଳ ମହାନ୍ ଦାର୍ଶନିକ ଆନ୍ଦୋଳନର ପୁରୋଧା ନଥିଲେ, ପରନ୍ତୁ ଏକାଧାରରେ ଜଣେ ଉଦାର ଶିକ୍ଷକ, କ୍ଲାନ୍ତିହୀନ ଧର୍ମ ପ୍ରଚାରକ ଓ ବିଚକ୍ଷଣ ମହାକବି, ଯିଏ ଜଟିଳ ତଥା ଗଭୀର ସତ୍ୟକୁ ସରଳ ଓ ସାବଲୀଳ ଶବ୍ଦରେ ପ୍ରକାଶ କରିଥିଲେ । ‘ଭଜ ଗୋବିନ୍ଦମ୍’ ଆଦି ଶଙ୍କରାଚାର୍ଯ୍ୟଙ୍କ ସୁସ୍ପଷ୍ଟ ଓ ଫଳପ୍ରସୂ ଭାଷାର ଏକ ସୁନ୍ଦର କୃତି, ଯାହା ସଂଘର୍ଷରତ ସାଧାରଣ ଜନତାଙ୍କୁ ଅଭିଭାଷିତ କରିବା ସହ ବୁଦ୍ଧିଜୀବୀ ଦାର୍ଶନିକଙ୍କୁ ମଧ୍ୟ ଅଭିଭୂତ କରିବାରେ ସମର୍ଥ ହୋଇଛି । ଶ୍ଳୋକାବଳୀର ଏକ ସୁରଭିତ ପୁଷ୍ପଗୁଚ୍ଛ ବୋଲି ଏହାକୁ ଉପଯୁକ୍ତ ଭାବେ କୁହାଯାଇଛି । ମୂଳ ଲେଖା ଉପରେ ସ୍ୱାମୀ ଚିନ୍ମୟାନନ୍ଦଙ୍କ ସୁସ୍ପଷ୍ଟ, ସଠିକ୍, ସାବଲୀଳ ଭାଷ୍ୟ ଏହାର ସୁଗନ୍ଧକୁ ବୃଦ୍ଧି କରେ । ଏହା ଆଧ୍ୟାତ୍ମିକ ସାଧକଙ୍କୁ ଶ୍ଳୋକରେ ନିହିତ ଅର୍ଥର ମନନ ଓ ହୃଦୟଙ୍ଗମ କରି ଶବ୍ଦାବଳୀର ଅନ୍ତରାଳରେ ଥିବା ସତ୍ୟରେ ନିମଜ୍ଜିତ କରିବାର ପ୍ରଚେଷ୍ଟା ରଖେ ।

